# କଳିଙ୍ଗନଗର ଗୁଳିକାଣ୍ଡ



## ପି.ୟୁ.ସି.ଏଲ୍. ରିପୋର୍ଟ

# ପୃଷ୍ଠଭୂମି

ନୂତନ ଆର୍ଥିକ ନୀତି ୯୦ ଦଶକରେ ଆରମ୍ଭ ହୁଏ । ସେହି ଦିନଠୁଁ ବାରବାର ଗୋଟିଏ କଥା ଶୁଣିବାକୁ ମିଳେ ଯେ, ଓଡ଼ିଶାର ଦାରିଦ୍ର୍ୟ ଦୂରୀକରଣ ପାଇଁ 'ଶିଳ୍ପିକରଣ' ଆବଶ୍ୟକ । ଦାରିଦ୍ର୍ୟ ଦୂରିକରଣ ପାଇଁ ବିକାଶ ସମ୍ବନ୍ଧୀୟ ଆଲୋଚନା ସଭାରେ ପରଷା ଯାଉଥିବା ଯୁକ୍ତି ବି ସରଳ - ଯେ ଓଡ଼ିଶାରେ ଲୋକ ମରୁଡ଼ି, ମଡ଼କ ଓ ବନ୍ୟାରେ ମରନ୍ତି; ଅନାହାର ମୃତ୍ୟୁ ଓଡ଼ିଶାର ଅନ୍ୟ ଏକ ପରିଚୟ; କିନ୍ତୁ କିଏ ନ ଜାଣେ ଯେ ଓଡ଼ିଶା ଖଣିଜ ସଂପଦରେ ଭରପୁର ? ଅତଏବ, ଖଣି ଖୋଲ, ମାଟିର ଗର୍ଭରୁ ଖଣିଜ ସଂପଦ ବାହାର କର; ଓଡ଼ିଶାର ସବୁ ସମସ୍ୟା ସମାଧାନ । ସରକାରଙ୍କ ପାଖରେ ଏତେ ଧନ ନାହିଁ ଯେ ଖଣିଜ ସଂପଦକୁ ଉପଯୋଗ କରି ଶିଳ୍ପ ସ୍ଥାପନା କରିବେ । କାରଣ ସରକାର ନିଜ କର୍ମଚାରୀମାନଙ୍କୁ ଦରମା ଦେଉ ଦେଉ ଭଣ୍ଡାରଘର ଖାଲି । ଏଣୁ, ଖଣି ଲିଜ୍ ଯଦି ଘରୋଇ କମ୍ପାନୀମାନଙ୍କୁ ଦିଆଯାଏ, ଭିତ୍ତିଭୂମି ବିକାଶ କରି ଶିଳ୍ପପତିମାନଙ୍କୁ ଶିଳ୍ପ ସ୍ଥାପନା ପାଇଁ ଆମନ୍ତ୍ରଣ କରାଯାଏ, ତେବେ ରାତାରାତି ଓଡ଼ିଶାରୁ ଦାରିଦ୍ର୍ୟ ଉଭାନ ହୋଇଯିବ । ଓଡ଼ିଶା ପ୍ରାଚୁର୍ଯ୍ୟରେ ଭରିଯିବ । ଏ ପ୍ରକାର ସଂଗଠିତ ପ୍ରଚାର ସହ ଜଗତୀକରଣର ପ୍ରବଳ ହାଓ୍ୱା, ବେରୋଜଗାର ଗ୍ରସ୍ତ ମଧ୍ୟମବର୍ଗୀ ମଣିଷଟି ମନରେ ସ୍ୱପ୍ନର ପର ଲଗାଏ । ଶିଳ୍ପ ହେଲେ ଶିକ୍ଷିତ ବେକାର ଯୁବକଙ୍କୁ ଚାକିରୀ ମିଳିବ, ଗରିବ ଅଣକୁଶଳୀ ଶ୍ରମିକମାନଙ୍କୁ କାମ ମିଳିବ, ସମ୍ବଳ ଅଭାବରେ ହନ୍ତସନ୍ତ ସରକାରକୁ ରାଜସ୍ୱ ମିଳିବାର ରାସ୍ତା ଫିଟିବ । ଓଡ଼ିଶା ଘିଅ ମହୁରେ ଭାସିବ । କର୍ପୋରେଟ ଗଣମାଧ୍ୟମ, ସରକାର, ଆନ୍ତର୍ଜାତୀୟ ଅନୁଦାନକାରୀ ସଂସ୍ଥା, ଏନ୍‌ଜିଓ, ବିଶ୍ୱବ୍ୟାଙ୍କ୍ ଏବଂ ପ୍ରତିଷ୍ଠାନୀ ବୁଦ୍ଧିଜୀବୀମାନେ ଏହି ମନ୍ତ୍ରକୁ ଅହରହ ବିଞ୍ଚିଚାଲିଛନ୍ତି । ଆଖିପାଖକୁ ଅନେଇଲେ ଲାଗେ, ମନ୍ତ୍ରଟି କିଛି ମାତ୍ରାରେ କାଟୁକରିଛି ।

ଏହି ନବ୍ୟ-ଉଦାରବାଦୀ ଶିଳ୍ପିକରଣର ଆହ୍ୱାନ ମୂଳରେ ରହିଛି ଓଡ଼ିଶାର ବିଶାଳ ଖଣିଜ ସଂପଦ । ଭାରତରେ ଗଚ୍ଛିତ ଥିବା ମୋଟ ବକ୍‌ସାଇଟର ୬୦%, କୋଇଲାର ୨୫%, କ୍ରୋମାଇଟର ୯୮%, ଲୁହାପଥର ୨୮%, ନିକେଲର ୯୨%, ଏବଂ ମାଙ୍ଗାନିଜର ୨୦% କେବଳ ଓଡ଼ିଶାରେ ଅଛି । ଏତେ ବିଶାଳ ଖଣିଜ ସଂପଦର ଭଣ୍ଡାର ଲାଭଖୋର ଘରୋଇ କମ୍ପାନୀମାନଙ୍କ ପାଟିରୁ ଲାଳ ଗଡ଼ିବା ଲାଗି ଯଥେଷ୍ଟ । କିନ୍ତୁ ସେଥିରେ ବି କେଁ ରହିଛି । ଖଣି ଖୋଳିବାଠାରୁ ଆରମ୍ଭ କରି ଶିଳ୍ପସ୍ଥାପନା ଓ ଆନୁଷଙ୍ଗିକ ଭିତ୍ତିଭୂମି ନିର୍ମାଣ ଲାଗି ମାଟି ଦରକାର । ଏବଂ ସେହି ମାଟିରେ ବାସ କରନ୍ତି ଅଧିକାଂଶ ଭାବେ ଆଦିବାସୀ ସମ୍ପ୍ରଦାୟ; ଯଦିଓ ବଂଚିତ ଓ ଗରିବ ସେମାନେ ଭାରତର ବେଖାଦ ନାଗରିକ । ଜମି ଅକ୍ତିଆର କରିବା

ଲାଗି, ସେମାନଙ୍କୁ କଳେ, ବଳେ, ଛଳେ ତଡିବାକୁ ପଡିବ । ସମୟକ୍ରମେ, ସେମାନେ କିନ୍ତୁ ସରକାରଙ୍କର ଏହି 'ବିକାଶ ନୀତି'କୁ ସନ୍ଦେହ ଚକ୍ଷୁରେ ଦେଖିବା ଆରମ୍ଭ କରିଛନ୍ତି; ସେମାନେ ଭାବନ୍ତି ସେମାନଙ୍କୁ ଅଣଦେଖା କରାଯାଉଛି । ସନ୍ଦେହରୁ ସୃଷ୍ଟି ହୁଏ କ୍ରୋଧ, ଏବଂ କ୍ରୋଧରୁ ପ୍ରତିରୋଧ । ଯେତେବେଳେ ବି ପ୍ରତିରୋଧ ହୁଏ, ସରକାର ନିଜ ଲୋକଙ୍କୁ ଦମନ କରିବାକୁ ପଛାନ୍ତି ନାହିଁ । ପ୍ରତିରୋଧ ଯେତେ ତ୍ରୀବ ହୁଏ, ଦମନ ସେତିକି ମାତ୍ରାରେ ବଢିଯାଏ । ୨୦୦୦ ଡିସେମ୍ବରରେ ମାଇକଞ୍ଚଠାରେ ପୁଲିସ ଗୁଳିରେ ୩ଜଣ ଆଦିବାସୀଙ୍କ ପ୍ରାଣଗଲା । ସେ ସ୍ମୃତି ଜନମାନସରେ ଆଜି ବି ଜୀବନ୍ତ । ପୂର୍ବରୁ ୧୯୯୭ ମସିହାରେ ସିନ୍ଧିଗାଁରେ (ଗୋପାଳପୁର) ଟାଟାର ଇସ୍ପାତ ପ୍ରକଳ୍ପକୁ ବିରୋଧ କରୁଥିବା ଜନସାଧାରଣଙ୍କ ଉପରକୁ ପୁଲିସ ଗୁଳି ଚଳେଇଥିଲା । ଅତଏବ, ଚାଲୁରହିଥିବା ସଂଘର୍ଷର ଗୋଟିଏ ପାଖେ, ସରକାରଙ୍କ ନେତୃତ୍ୱରେ ଅଛନ୍ତି ଶିଳ୍ପିକରଣର ସପକ୍ଷବାଦୀ; ଅନ୍ୟ ପାଖେ ତାକୁ ବିରୋଧ କରୁଥିବା ଗୋଷ୍ଠୀ । କଳିଙ୍ଗନଗରର ଏହି ସଂଘର୍ଷର ଆଉ ଏକ କଡି ।

ଏହି ପୃଷ୍ଠଭୂମିରେ କଳିଙ୍ଗନଗର ଘଟଣାକୁ ଦେଖାଯାଉ । ୨୦୦୬ ଜାନୁୟାରୀ ୨ ତାରିଖ ଦିନ, ସତେ ଯେମିତି ରାଜ୍ୟ ସରକାରଙ୍କର ନୂଆବର୍ଷ ଭେଟି, କଳିଙ୍ଗନଗରଠାରେ ପୁଲିସର ଗୁଳିକାଣ୍ଡ ଘଟଣା ରାଜ୍ୟବାସୀ ଜାଣିବାକୁ ପାଇଲେ । ଟାଟା କମ୍ପାନୀର ପ୍ରସ୍ତାବିତ ଇସ୍ପାତ ପ୍ରକଳ୍ପର ନିର୍ମାଣ କାର୍ଯ୍ୟକୁ ବିରୋଧ କରୁଥିବା ଜନସାଧାରଣଙ୍କ ଉପରେ ପୁଲିସ ଗୁଳି ଚଳେଇ ୧୨ ଜଣଙ୍କୁ ହତ୍ୟା କରିଛି ଓ ଅନେକ ଆହତ ହୋଇଛନ୍ତି । ଘଟଣାରେ ଜଣେ ପୁଲିସ ମଧ୍ୟ ନିହତ ହୋଇଛି ଓ କେତେକ ଆହତ ହୋଇଛନ୍ତି । ଏପରି ଏକ ଅପ୍ରତ୍ୟାଶିତ ଓ ମର୍ମନ୍ତୁଦ ଘଟଣାର ନିନ୍ଦା ସବୁ ମହଲରୁ ହେଲା, ବିଶେଷ କରି ମାନବ ଅଧିକାର ସଂଗଠନ ଓ ବିରୋଧୀ ଦଳ ତରଫରୁ । ପିୟୁସିଏଲର ଭୁବନେଶ୍ୱର , କଟକ ଓ ଢେଙ୍କାନାଳ ଶାଖାର ମିଳିତ ଉଦ୍ୟୋଗରେ ଏକ ତଥ୍ୟାନୁସନ୍ଧାନ ଦଳ ଗଠନ କରାଗଲା ଘଟଣାକୁ ବୁଝିବାପାଇଁ । ଜାନୁୟାରୀ ୧୧ ତାରିଖ ଦିନ ଉକ୍ତ ଦଳ ଘଟଣାସ୍ଥଳ ସହ ଆଖପାଖ ଆଦିବାସୀ ସାହିର ଲୋକଙ୍କୁ ଭେଟିଲେ । ପର ପର ୩ ଥର ଗସ୍ତକରି ସ୍ଥାନୀୟ ବାସିନ୍ଦା, ଆନ୍ଦୋଳନର କର୍ମକର୍ତ୍ତା, ମୃତବ୍ୟକ୍ତିଙ୍କ ପରିବାରବର୍ଗ, ପୁଲିସ ଓ ପ୍ରଶାସନିକ କର୍ତ୍ତୃପକ୍ଷ ଏବଂ ଥଇଥାନ କଲୋନୀର ବାସିନ୍ଦାଙ୍କୁ ଭେଟି ଆଲୋଚନା କଲେ । ଚିକିତ୍ସାଧୀନ ଆହତମାନଙ୍କୁ ମଧ୍ୟ କଟକ ବଡ ଡାକ୍ତରଖାନାରେ ଭେଟିଲେ ।

ପ୍ରତ୍ୟକ୍ଷ ଅନୁଭୂତି, ଖବରକାଗଜରେ ପ୍ରକାଶିତ ତଥ୍ୟ ତଥା ଅନ୍ୟାନ୍ୟ ଲିଖିତ ଦଲିଲ, ଦସ୍ତାବିଜକୁ ସଂଯୋଗ କରି ତାହାରି ଆଧାରରେ ଦଳ ଘଟଣା ସମ୍ବନ୍ଧରେ ନିମ୍ନୋକ୍ତ ବିବରଣୀ ପ୍ରସ୍ତୁତ କରନ୍ତି ।

## କଳିଙ୍ଗନଗର ଅଞ୍ଚଳ : ଏକ ସଂକ୍ଷିପ୍ତ ପରିଚୟ

କଳିଙ୍ଗନଗର ଓଡିଶାର ଏକ ନୂଆ ଶିଳ୍ପାଞ୍ଚଳ । ଯାଜପୁର ଜିଲ୍ଲାର ଦାନଗଦି ଓ ସୁକିନ୍ଦା ବ୍ଲକର କେତେକ ମୌଜାକୁ ନେଇ ଏହା ଗଠିତ । ଜିଲ୍ଲାର ସଦର ମହକୁମା ଠାରୁ ପ୍ରାୟ ୩୦-୪୦ କି.ମି. ଦୂର ଏବଂ ରାଜଧାନୀ ଭୁବନେଶ୍ୱର ଠାରୁ ପ୍ରାୟ ୧୦୦ କି.ମି. । ଜାତୀୟ ରାଜପଥ ୨୦୦ (ଦୈତାରୀ-ପାରାଦୀପ) ଏହି ଶିଳ୍ପାଞ୍ଚଳ ଦେଇଯାଇଛି । ଯାଜପୁର -କେଉଁଝରର ଲୁହାପଥର କ୍ରୋମାଇଟ ଖଣି ଅଞ୍ଚଳ ସହ ପାରାଦୀପ ବନ୍ଦରକୁ ଏହି ରାସ୍ତା ସଂଯୋଗ କରେ । ଖାଲଢ଼ିପ ଅସମାନ ଭୂଇଁ ସହ ଠାଏ ଠାଏ ଜଙ୍ଗଲ ଓ ପାହାଡ ଏହି ନିର୍ଦ୍ଦିଷ୍ଟ ଅଞ୍ଚଳର ମାନଚିତ୍ରର ବିଶେଷତ୍ୱ । ସ୍ଥାନେ ସ୍ଥାନେ ନାଳ ଓ ଝରଣା ବହିଯାଇଛି । ସେ ସବୁରୁ ଲୋକେ ମାଛ ଓ କଙ୍କଡା ଧରନ୍ତି । ଶିଳ୍ପାଞ୍ଚଳର ପ୍ରାୟ ୫-୬ କି.ମି. ଦୂରରେ ବ୍ରାହ୍ମଣୀ ନଦୀ ବହୁଛି । ଖପୁରିଆ -କୁମ୍ଭୀର ଗଡିଆର ବିସ୍ତୀର୍ଣ୍ଣ ଚାରଣଭୂମି ପ୍ରାୟ ୨୦୦୦ ଗୋପାଳକଙ୍କର ଭାତହାଣ୍ଡି । କିନ୍ତୁ କୃଷି ହିଁ ସ୍ଥାନୀୟ ବାସିନ୍ଦା, ବିଶେଷତଃ ଆଦିବାସୀମାନଙ୍କର, ମୁଖ୍ୟ ଜୀବିକା । ଜଳସେଚନର ସୁବିଧା ନାହିଁ, ଚାଷ ଲାଗି ବର୍ଷାପାଣି ହିଁ ସାହାରା । ଶାରଦ ଧାନ ଅମଳ ପରେ, କେତେକ ଗାଁରେ ଲୋକେ ମୁଗ, ବିରି, ମସୁରୀ ଇତ୍ୟାଦି ଚାଷ କରନ୍ତି । ଏକରେ ଜମିରୁ ପ୍ରାୟ ୩ ।୪ କୁଇଣ୍ଟାଲ ଧାନ ଆଦାୟ ହୁଏ ।

### କ୍ଷତିଗ୍ରସ୍ତ ସ୍ଥାନୀୟ ବାସିନ୍ଦା

କଳିଙ୍ଗନଗର ଅଧିନସ୍ଥ ଜନବସତିରେ ଆଖିଦୃଶିଆ ସଂଖ୍ୟକ ତଫସିଲ ଭୁକ୍ତ ଜାତି ଓ ତଫସିଲ ଭୁକ୍ତ ଜନଜାତିର ଲୋକ ବାସକରନ୍ତି । ସୁକିନ୍ଦା ବ୍ଲକର ସମୁଦାୟ ଜନସଂଖ୍ୟାର ଶତକଡା ୩୬.୦୬ ଭାଗ ତଫସିଲ ଭୁକ୍ତ ଜନଜାତି ଓ ୧୧.୮୯ ଭାଗ ତଫସିଲ ଭୁକ୍ତ ଜାତି । ସେହିପରି ଦାନଗଦି ବ୍ଲକରେ ୨୮.୧୯ ଭାଗ ତଫସିଲ ଭୁକ୍ତ ଜନଜାତି ଓ ୨୨.୩୧ ଭାଗ ତଫସିଲ ଭୁକ୍ତ ଜାତିର ଲୋକ ବାସକରନ୍ତି । କିନ୍ତୁ କଳିଙ୍ଗନଗର ପାଇଁ ଅଧିଗ୍ରହୀତ ଅଞ୍ଚଳରେ ଆଦିବାସୀମାନଙ୍କର ହାର ବ୍ଲକ ହାରଠାରୁ ଯଥେଷ୍ଟ ଅଧିକ । (ଟେବୁଲ -୧)

ଏହି ଅଞ୍ଚଳରେ ହୋ, ସାନ୍ତାଳୀ, ମୁଣ୍ଡା ଆଦି ଜନଜାତିର ଲୋକ ବାସ କରନ୍ତି । ସେମାନଙ୍କ ମଧ୍ୟରୁ ପ୍ରାୟ ୮୦ ଭାଗ ହୋ । କଥିତ ଇତିହାସ ଅନୁଯାୟୀ ଏହି ଜନଜାତି ଗୁଡିକ ଉନବିଂଶ ଶତାବ୍ଦୀର ଶେଷଭାଗ ଓ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବିଭିନ୍ନ ପର୍ଯ୍ୟାୟରେ କେଉଁଝର, ମୟୁରଭଞ୍ଜ, ରାଞ୍ଚି, ସିଂହଭୂମ୍ ଆଦି ଜିଲ୍ଲାରୁ ଆସିଥିଲେ ଏବଂ ତତ୍‌କାଳୀନ ସୁକିନ୍ଦା ରାଜାଙ୍କ

ଆମନ୍ତ୍ରଣ କ୍ରମେ ଏଠାରେ ବସତି ସ୍ଥାପନ କରିଥିଲେ । ମେଡକ୍ସ ବନ୍ଦୋବସ୍ତ ବିବରଣୀ ୧୮୯୭ରେ (MADOX SETTLEMENT REPORT 1897) ବି ଅଞ୍ଚଳର ବସତି ବିଷୟରେ ଉଲ୍ଲେଖ ରହିଛି । ଉଲ୍ଲେଖ ଯୋଗ୍ୟ ଯେ ଓଡିଶା ୧୯୩୬ ମସିହାରେ ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ପାଇଲା ।

ଟାଟା ଓ ମହାରାଷ୍ଟ୍ର ସିମଲେସ ଦ୍ୱାରା ବିସ୍ଥାପିତ ହେବାକୁ ଥିବା ମୌଜା / ପଞ୍ଚାୟତର ସାମାଜିକ-ଆର୍ଥିକ ସ୍ଥିତିର ଝଲକ ନିମ୍ନୋକ୍ତ ସାରଣୀରୁ ଜଣାପଡେ ।

ଟେବୁଲ୍ -୧

| ଗ୍ରାମ / ପଞ୍ଚାୟତର ନାମ | ଘର ସଂଖ୍ୟା | ଆଦିବାସୀ ଜନସଂଖ୍ୟା ହାର | ଦଳିତ ଜନସଂଖ୍ୟା ହାର | ସାକ୍ଷରତା ହାର | କୃଷକ ହାର | କୃଷି ଶ୍ରମିକ ହାର |
|---|---|---|---|---|---|---|
| ଋଦିଆ | ୩୩୧ | ୮୫.୯ | .୨ | ୩୭.୬ | ୪୧.୦ | ୩୬.୨ |
| ଗୋବରଘାଟୀ | ୫୫୮ | ୮୮.୮ | ୨.୧ | ୫୩.୫ | ୧୬.୦ | ୩୭.୭ |
| ଗାଡପୁର | ୧୪୦ | ୯୭.୮ | ୦ | ୪୬.୭ | ୪୩.୦ | ୧୩.୫ |

*ଉତ୍ସ : ଜନଗଣନା ରିପୋର୍ଟ - ୨୦୦୧, ଭାରତ ସରକାର*

ଏ ଅଞ୍ଚଳରେ ଶେଷ ଭୂବନ୍ଦୋବସ୍ତ ୧୯୨୮ ମସିହାରେ ହୋଇଥିଲା । ତେଣୁ ସରକାରୀ ପରିସଂଖ୍ୟାନରୁ ଜମିର ସତ୍ତ୍ୱାଧିକାର ବାବଦରେ ସଠିକ୍ ଚିତ୍ର ଉପଲବ୍ଧ ନୁହେଁ । ସେ ଅଞ୍ଚଳ ଗସ୍ତ ସମୟରେ ଲୋକମାନଙ୍କଠାରୁ ମିଳିଥିବା ତଥ୍ୟ ମତେ-ଜନସଂଖ୍ୟାର ୬୦ରୁ ୭୦ ଭାଗ ନିମ୍ନ ମଧ୍ୟବିତ ଓ କ୍ଷୁଦ୍ରଋଷୀ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଯଦିଓ ଜମି ଦଖଲରେ ଅଛନ୍ତି, କିନ୍ତୁ ଉକ୍ତ ଜମି ପଟା ସେମାନଙ୍କୁ ମିଳିନାହିଁ । ଏକ କ୍ଷୁଦ୍ର ଗୋଷ୍ଠୀର ଲୋକଙ୍କ ହାତରେ ୧୫ରୁ ୬୦ ଏକର ପର୍ଯ୍ୟନ୍ତ ଜମି ଅଛି । ଭାଗଋଷ କରି ଚଳୁଥିବା ଜନସଂଖ୍ୟା ବି ବେଶ ଅଧିକ । ଏ ସବୁର ଜମି ମାଲିକମାନେ ଯାଜପୁର ଆଦି ସହରରେ ରୁହନ୍ତି ।

## କଳିଙ୍ଗନଗର ଶିଳ୍ପାଞ୍ଚଳର ବିକାଶ

ଭାରତରେ ଅର୍ଥନୈତିକ ସଂସ୍କାର ଓ ଉଦାରୀକରଣର ପର୍ବ ୯୦ ଦଶକରେ ଆରମ୍ଭ ହେଲା । ସେହି ସମୟରେ ହିଁ କଳିଙ୍ଗନଗର ଶିଳ୍ପାଞ୍ଚଳର ପରିକଳ୍ପନା କରାଗଲା । ନିକଟସ୍ଥ

ସୁକିନ୍ଦା ଓ କେଉଁଝରର ଅଞ୍ଚଳର ଲୁହା ଓ କ୍ରୋମାଇଟ ଖଣି, ଖଣି ଅଞ୍ଚଳ ସହ ପାରାଦୀପ ବନ୍ଦରକୁ ସଂଯୋଗକାରୀ ଜାତୀୟ ରାଜପଥର ସୁବିଧା ତଥା ବ୍ରାହ୍ମଣୀ ନଦୀର ପାଣି କଳିଙ୍ଗନଗରକୁ ଏକ ଶିଳ୍ପାଞ୍ଚଳ ଭାବେ ବିକାଶ କରିବା ଲାଗି ମୁଖ୍ୟ ଆକର୍ଷଣ ଥିଲା ।

କଳିଙ୍ଗନଗର ଶିଳ୍ପାଞ୍ଚଳରେ ଆନୁଷଙ୍ଗିକ ଭିତ୍ତିଭୂମିର ବିକାଶ ଲାଗି ଇଡ୍‌କୋ (Industrial Infrastructure Development corporation of Orissa-IDCO) କୁ ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା । ଯାହା ଫଳରେ ଶିଳ୍ପପତିମାନଙ୍କୁ ଶିଳ୍ପ ସ୍ଥାପନ କରିବା ପାଇଁ ଆକୃଷ୍ଟ କରାଯାଇପାରିବ । ଇଡକୋ ସେହି ଉଦ୍ଦେଶ୍ୟରେ ୧୯୯୨-୯୪ରେ, ପ୍ରଥମ ପଦକ୍ଷେପ ସ୍ୱରୂପ, ଜମି ଅଧିଗ୍ରହଣ କାମ ଆରମ୍ଭ କଲା । ସମସ୍ତ ଅଧିଗୃହୀତ ଜମିର କେତେ ଭାଗ ମାତ୍ର ଶିଳ୍ପ ସଂସ୍ଥାମାନଙ୍କୁ ହସ୍ତାନ୍ତର କରାଯାଇଛି, ଅନ୍ୟ ଜମିଗୁଡ଼ିକ ଲୋକେ ପୂର୍ବପରି ଚାଷ କରୁଛନ୍ତି । କାରଣ, ଯଦିଓ ସରକାର ବହୁଗୁଡ଼ିଏ କମ୍ପାନୀ ସହ ବୁଝାମଣା ପତ୍ର ସ୍ୱାକ୍ଷର କରିଥିଲେ, ଅଳ୍ପ କେତେକ ଶିଳ୍ପ ସଂସ୍ଥା ଶିଳ୍ପ ସ୍ଥାପନା ପାଇଁ ଆସିଲେ । ସମ୍ଭବତଃ, ଆନ୍ତର୍ଜାତିକ ବଜାରରେ ଇସ୍ପାତର ମାନ୍ଦାବସ୍ଥା ହେତୁ କମ୍ପାନୀମାନେ ଆଗ୍ରହପ୍ରକାଶ କଲେ ନାହିଁ । ଏବେ କିନ୍ତୁ ମାନ୍ଦାବସ୍ଥା ଦୂରହୋଇଛି, କମ୍ପାନୀମାନେ ଶିଳ୍ପସ୍ଥାପନା ପାଇଁ ଧାଁ ଦଉଡ ଲଗେଇଛନ୍ତି ।

କଳିଙ୍ଗନଗରରେ ଶିଳ୍ପ ସ୍ଥାପନା କରୁଥିବା କମ୍ପାନୀ ମାନଙ୍କ ମଧ୍ୟରୁ ଟାଟା ଅନ୍ୟତମ । ୧୫୪୦୦୦ ନିୟୁତ ଟଙ୍କା ବିନିଯୋଗରେ ବାର୍ଷିକ ୬ ନିୟୁତ ମେଟ୍ରିକ ଟନ୍ ଉତ୍ପାଦନକ୍ଷମ ଏକ ଇସ୍ପାତ ପ୍ରକଳ୍ପ ପାଇଁ ଟାଟା ଓଡିଶା ସରକାର ସହ ୨୦୦୪ ମସିହାରେ ବୁଝାମଣା ପତ୍ର ସ୍ୱାକ୍ଷର କରିଥିଲେ । ସଦ୍ୟତମ ବିବରଣୀ ଅନୁସାରେ, ନିର୍ମାଣଧୀନ / ଉତ୍ପାଦନକ୍ଷମ ଅବସ୍ଥାରେ ୧୨ଟି ଶିଳ୍ପ ପ୍ରକଳ୍ପ କଳିଙ୍ଗନଗରରେ ଅଛି । ସେଥିରୁ ୨ଟି - ନୀଳାଚଳ ଇସ୍ପାତ ନିଗମ ଓ ମେସ୍କୋ - ଉତ୍ପାଦନ ଆରମ୍ଭ କରିଛନ୍ତି । ଜିନ୍ଦଲ ଓ ଭିସା ପରୀକ୍ଷାମୂଳକ ଉତ୍ପାଦନ ଅବସ୍ଥାରେ ଅଛନ୍ତି । କଳିଙ୍ଗନଗର ଶିଳ୍ପାଞ୍ଚଳରେ ପ୍ରକଳ୍ପ ସ୍ଥାପନ କରିବାକୁ ଥିବା କମ୍ପାନୀମାନେ ହେଲେ- ମହାରାଷ୍ଟ୍ର ସିମ୍‌ଲେସ୍, ଉତ୍ତମ ଗାଲଭା, ମୈଥନ, ରୋହିତ, ଦୀନବନ୍ଧୁ ଏବଂ ଅନ୍ୟମାନେ । ଏ ସମସ୍ତ ପ୍ରକଳ୍ପର ସର୍ବମୋଟ ଉତ୍ପାଦନ ବାର୍ଷିକ ୧୨ ନିୟୁତ ମେଟ୍ରିକ ଟନ ହେବ ବୋଲି କୁହାଯାଇଛି ।

କଳିଙ୍ଗନଗରରେ ପ୍ରସ୍ତାବିତ ପ୍ରକଳ୍ପର ନାମ ଓ ଆବଣ୍ଟିତ ଜମିର ପରିମାଣ

ଟେବୁଲ୍ -୨

| କାରଖାନା | ଦିଆଯାଇଥିବା ଜମିର ପରିମାଣ | କାରଖାନା | ଦିଆଯାଇଥିବା ଜମିର ପରିମାଣ |
|---|---|---|---|
| ମେସ୍କୋ | ୫୩୦ ଏକର | ଟାଟା ଷ୍ଟିଲ୍ | ୨୪୦୦ ଏକର |
| ଓରିଅନ | ୧୫୦ ଏକର | ରୋହିତ | ୫୦ ଏକର |
| ମୈଥନ ଇସ୍ପାତ | ୧୦୦ ଏକର | ଭିସା | ୩୯୦ ଏକର |
| ନୀଳାଚଳ ଇସ୍ପାତ | ୨୫୦୦ ଏକର | ଜିନ୍ଦଲ | ୬୭୮ ଏକର |
| ଉତ୍ତମ ଗାଲ୍‌ଭା | ୩୭୦ ଏକର | ଦିନବନ୍ଧୁ | ୧୦୦ଏକର |
| ମହାରାଷ୍ଟ୍ର ସିମ୍‌ଲେସ | ୫୦୦ ଏକର | କେ.ଢେ ଇସ୍ପାତ | ୫୦ ଏକର |

*ଉତ୍ସ : ଅତିରିକ୍ତ ଜିଲ୍ଲାପାଳଙ୍କ ଅଫିସ୍, କଳିଙ୍ଗନଗର*

## ଜମି ଅଧିଗ୍ରହଣ ଓ କ୍ଷତିପୂରଣ

ନବେ ଦଶକର ଆରମ୍ଭରେ, କଳିଙ୍ଗନଗର ଶିଳ୍ପାଞ୍ଚଳ ପାଇଁ ଇଡ୍‌କୋ ଜମି ଅଧିଗ୍ରହଣ ଆରମ୍ଭ କଲେ । ବର୍ତ୍ତମାନ ସୁଦ୍ଧା ପ୍ରାୟ ୧୩୦୦୦ ଏକର ଜମି ଅଧିଗୃହୀତ ହୋଇସାରିଛି । ସେଥିରୁ, ୬୯୦୦ ଏକର ବ୍ୟକ୍ତିଗତ ମାଲିକାନାରେ ଥିବା ଜମି ଏବଂ ବାକିତକ 'ସରକାରୀ ଜମି' ବୋଲି କୁହାଯାଉଛି । ବାସ୍ତବରେ କିନ୍ତୁ, ଏହି 'ସରକାରୀ ଜମି'ରେ ଲୋକେ ପିଢି ପିଢି ଧରି ଚାଷ କରୁଛନ୍ତି, ଯଦିଓ ସେ ପାଇଁ ପଟ୍ଟା ମିଳିନାହିଁ । ଉଲ୍ଲେଖ ଯୋଗ୍ୟ ଯେ, ୧୯୨୮ ମସିହା ପରଠାରୁ ସେ ଅଞ୍ଚଳରେ ଆଉ ଭୂ-ବନ୍ଦୋବସ୍ତ ହୋଇନାହିଁ । ଓଡିଶା ଇଷ୍ଟେଟ ଉଚ୍ଛେଦ ଆଇନ୍ ୧୯୫୧ (Orissa Estate Abolition Act. 1951) ପାଶ୍‌ହେବା ପରେ ସୁକିନ୍ଦା ରାଜାଙ୍କର ଇଷ୍ଟେଟ ଓଡିଶା ସରକାରଙ୍କୁ ହାତକୁ ଆସିଲା । କିନ୍ତୁ ଲୋକଙ୍କ ଦଖଲରେ ଥିବା ଜମି ଉପରେ ସେମାନଙ୍କୁ ରୟତି ଅଧିକାର (Tenancy Rights) ମିଳିଲା ନାହିଁ । ଏପରିକି, ଓଡିଶା ସର୍ବେକ୍ଷଣ ଓ ବନ୍ଦୋବସ୍ତ ଆଇନ, ୧୯୫୮(Orissa Survey Settlement Act, 1956) (୧୯୬୨ ରେ ନିୟମାବଳୀ ତିଆରି ହେଲା) ପାଶ ହେଲା ପରେ ବି ସେ ଅଞ୍ଚଳରେ ଭୂ-ବନ୍ଦୋବସ୍ତ କରାଗଲା ନାହିଁ । ଅଧିକନ୍ତୁ, ଓଡିଶାର ବିଭିନ୍ନ ସରକାରଙ୍କ ଅମଳରେ ଘୋଷିତ ଭୂ-ସଂସ୍କାର

ଓ ଭୂମିହୀନଙ୍କୁ ଜମି ଆଦି ପ୍ରତିଶ୍ରୁତି ଗୁଡ଼ିକ ପାଣିର ଗାର ହୋଇରହିଗଲା ।

ଜମି ଅଧିଗ୍ରହଣର ପ୍ରଥମ ପର୍ଯ୍ୟାୟରେ, ଏକର ପିଛା ଟ୧୫୦୦୦/- ରୁ ଟ୩୦୦୦୦/- ହାରରେ କ୍ଷତିପୂରଣ ଦିଆଗଲା । ସମ୍ଭବତଃ, କ୍ଷତିପୂରଣ ରାଶି ବୃଦ୍ଧି କରିବାର ଦାବୀକୁ ଧ୍ୟାନରେ ରଖି, ପରେ 'ବଦାନ୍ୟତା ମୂଳକ ପଦକ୍ଷେପ' ସ୍ୱରୂପ ଏକର ପିଛା ଅନୁକମ୍ପା ରାଶି ଟ୨୫୦୦୦/- କରି ଦିଆଗଲା (ପ୍ରଥମେ ଟ୧୦୦୦୦/-ଏବଂ ପରେ ଟ୧୫୦୦୦/-) ।

*ମୋର ଦେଢ ଏକର ପଟ୍ଟା ଜମି ଏବଂ ପ୍ରାୟ ୩ ଏକର ପଟ୍ଟା ନଥିବା ଜମି ଅଛି । କିନ୍ତୁ ମୋତେ କିଛି ବି କ୍ଷତି ପୂରଣ ମିଳିନାହିଁ । ଯେତେବେଳେ କମ୍ପାନୀ ପାଇଁ ଜମି ସର୍ଭେ ହେଉଥିଲା, ଅମୀନ ସାଙ୍ଗରେ ମୋର ପାଟିତୁଣ୍ଡ ହୋଇଥିଲା । ଅମୀନ ମୋତେ ବାଗ୍ୟେର କୁକୁଡା ଦେବାକୁ କହୁଥିଲା । ମୁଁ ମନାକଲାରୁ ମୋ ନାଁ ସେ ରେକର୍ଡ କଲା ନାହିଁ । ଏଲୋ (Land Acquisition Officer) ପାଖକୁ କେତେଥର ଦଉଡିଛି । ହେଲେ ମୋ କଥା ଶୁଣିଲେ ନାହିଁ । ଏ ପର୍ଯ୍ୟନ୍ତ ମୁଁ ଜମି ଚାଷ କରୁଥିଲି, ହେଲେ ଏବେ ଟାଟା ମୋ ଜମି ନେଇ ଯିବ ।*

--ଗାଲିଆ ମୁଣ୍ଡା,
କଳାମାଟିଆ ଗାଁ ବାସିନ୍ଦା

କେବଳ ପଟ୍ଟାଥିବା ଜମିମାଲିକମାନେ କ୍ଷତିପୂରଣ ଟଙ୍କା ପାଇଲେ । ପଟ୍ଟା ନଥିବା ଜମି ଦଖଲରେ ଥିବା ଏକ ବଡ ଗୋଷ୍ଠୀ କ୍ଷତିପୂରଣ ପାଇବାରୁ ବଞ୍ଚିତ ହେଲେ । ଯେଉଁମାନେ ଭାଗଚାଷୀ ଭାବେ ଜମି ଚାଷ କରୁଥିଲେ, ସେମାନେ କିଛି ପାଇଲେ ନାହିଁ । ଅଧିଗୃହୀତ ଜମିକୁ ଇଡ୍‌କୋ କମ୍ପାନୀମାନଙ୍କୁ ବହୁ ଅଧିକ ଦାମରେ ବିକ୍ରି କରି ଚାଲିଛି । ଉପଲବ୍ଧ ତଥ୍ୟ ଅନୁସାରେ ଇଡ୍‌କୋ ଟାଟା କମ୍ପାନୀକୁ ଏକର ପିଛା ୩.୫ ଲକ୍ଷ ଟଙ୍କାରେ ବିକ୍ରି କରିଛି ।

ଗଣମାଧ୍ୟମରେ ପ୍ରକାଶିତ ଖବର ଅନୁସାରେ, କଳିଙ୍ଗନଗର ଏକ ଶିଳ୍ପାଞ୍ଚଳ ଭାବେ ଚିହ୍ନିତ ହେଲା ପରେ କେତେକ ପ୍ରଭାବଶାଳୀ ବ୍ୟକ୍ତି, ବେ-ବନ୍ଦୋବସ୍ତ ସ୍ଥିତିର ଫାଇଦା ନେଇ ଜମି ହଡପ କରିଛନ୍ତି । ଜଣେ ପୂର୍ବତନ ମୁଖ୍ୟ ସଚିବ, ନିଜ ପ୍ରଭାବ ବଳରେ, ୧୬୦ ଏକର ଜମି ହଡପ କରିଛନ୍ତି । *(ଉତ୍ସ : ସମାଜ ୧୮.୧.୦୬)*

*ଜମି ଅଧିଗ୍ରହଣ ଆଇନ୍ ୧୮୯୪ (ସଂଶୋଧିତ ୧୯୮୪) ଅନୁସାରେ, ଜମି ମାଲିକଙ୍କର (ବିକ୍ରେତା) ଜମି ବିକିବାକୁ ନାଁ କହିବାର ଅଧିକାର ନାହିଁ । କାରଣ ଜମି 'ସାର୍ବଜନୀନ ଉଦ୍ଦେଶ୍ୟ' ରେ ଅଧିଗୃହୀତ ହେଉଛି । ଜମିମାଲିକ କେବଳ ସରକାରଙ୍କ ଦ୍ୱାରା ନିର୍ଧାର୍ଯ୍ୟ ମୂଲ୍ୟ ବିଷୟରେ ନ୍ୟାୟାଳୟର (ସେହି ସରକାର) ଦ୍ୱାରସ୍ଥ ହୋଇପାରିବେ । ଏବଂ ନ୍ୟାୟାଳୟ ଯୋଉ ମୂଲ୍ୟ ସ୍ଥିର କରିବେ ତାହା ସେ ଗ୍ରହଣ କରିବାକୁ ବାଧ୍ୟ । ଅନ୍ୟ ପକ୍ଷରେ, ଜଣେ ଯେତେବେଳେ କୌଣସି ବ୍ୟକ୍ତିଗତ କ୍ରେତାଙ୍କ ସହ ମୁକାବିଲା କରୁଛି, ସେତେବେଳେ ଦର ନ ପଟିଲେ, ଜମି ବିକିବାକୁ ନାଁ କହିବାର ଅଧିକାର ଅଛି । ବିଡମ୍ବନାର ବିଷୟ, ଜମି ଅଧିଗ୍ରହଣ ଆଇନ ବଳରେ, ସରକାରଙ୍କଦ୍ୱାରା 'ସାର୍ବଜନୀନ ଉଦ୍ଦେଶ୍ୟ' ରେ ଅଧିଗୃହୀତ ଜମି, ଅନେକ ସମୟରେ ଘରୋଇ କମ୍ପାନୀମାନଙ୍କ ପାଇଁ ଉଦ୍ଦିଷ୍ଟ ।*

*୧୯୯୫ -୯୬ ମସିହାରେ ଗୋପାଳପୁର ଠାରେ, ଟାଟା କମ୍ପାନୀର ପ୍ରସ୍ତାବିତ ଇସ୍ପାତ ପ୍ରକଳ୍ପ ପାଇଁ ଓଡିଶା ସରକାର ୪୦୦୦ ଏକର ପାଖାପାଖି ଜମି ଅଧିଗ୍ରହଣ କରିଥିଲେ । ଏଯାବତ୍ ପ୍ରକଳ୍ପ ସ୍ଥାପନା ହୋଇନାହିଁ ଏବଂ ଯାହା ଜଣାପଡୁଛି ଟାଟା କମ୍ପାନୀ ଗୋପାଳପୁରରେ ପ୍ରକଳ୍ପ ନ ବସେଇବାର ନିଷ୍ପତ୍ତି ନେଇଛନ୍ତି । କିନ୍ତୁ ସାର୍ବଜନୀନ ଉଦ୍ଦେଶ୍ୟରେ ଅଧିଗୃହୀତ ଜମି ଏବେ ବି ଟାଟା କମ୍ପାନୀ ଦଖଲରେ ଅଛି ।*

## ବିସ୍ଥାପନ ଓ ଥଇଥାନ

ଓଡିଶାରେ ବିସ୍ଥାପନର ଏକ ଦୁଃଖଦ ଓ ଲମ୍ବା ଇତିହାସ ଦେଖିବାକୁ ମିଳେ । ତଥାପି ବି ଓଡିଶା ସରକାରଙ୍କର ଏକ ଥଇଥାନ ଓ ପୁନର୍ବାସ ନୀତି ନାହିଁ । କେବଳ ପ୍ରକଳ୍ପ ଭିତ୍ତିକ ନିର୍ଦ୍ଦେଶନାମା ଜାରୀ କରାଯାଏ । କଳିଙ୍ଗନଗର ଶିଳ୍ପାଞ୍ଚଳ ପାଇଁ ସେହି ଭଳି କେତେକ ନିର୍ଦ୍ଦେଶନାମା ଜାରୀ କରାଯାଇଛି । ୧୯୯୨ରେ ଜମି ଅଧିଗ୍ରହଣ ଆରମ୍ଭ ହେବାଠାରୁ ବିଭିନ୍ନ ସମୟରେ ନିର୍ଦ୍ଦେଶନାମା ଜାରୀ କରାଯାଇଛି (୨୦୦୫ ନଭେମ୍ବର ୧୮ର ନିର୍ଦ୍ଦେଶନାମା ସଦ୍ୟତମ) । ନିର୍ଦ୍ଦେଶନାମାରେ ମୁଖ୍ୟତଃ ୩ଟି ବିଷୟକୁ ଧ୍ୟାନ ଦିଆଯାଇଛି : (କ) ଜମିପାଇଁ ଆର୍ଥିକ କ୍ଷତିପୂରଣ, (ଖ) ବାସସ୍ଥାନପାଇଁ ଜମି ଓ ଗୃହ ନିର୍ମାଣ ପାଇଁ ସହାୟତା ଏବଂ (ଗ) ଜୀବିକା ହରେଇବା ଲାଗି କ୍ଷତିପୂରଣ । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ନିର୍ଦ୍ଦେଶନାମାରେ ଯଦିଓ ସରକାର, ଅଧିଗୃହୀତ ଜମି ତଥା ବାସସ୍ଥାନ ପାଇଁ ଜମି ଓ ଗୃହ ନିର୍ମାଣ ସହାୟତା ରାଶି ନିଧାର୍ଯ୍ୟ କରିଛନ୍ତି, କିନ୍ତୁ କମ୍ପାନୀ ପାଇଁ ବିସ୍ଥାପିତ ଲୋକଙ୍କୁ ଚାକିରୀ ଦେବା ବାଧ୍ୟତାମୂଳକ କରାଯାଇନାହିଁ । ବିସ୍ଥାପନ ପୂର୍ବରୁ କିନ୍ତୁ ସରକାର / ରାଜନେତାମାନେ ଚାକିରୀ ଦେବାର ପ୍ରତିଶୃତି ବାର ବାର ଦେଇଛନ୍ତି । କୌଣସି ସମୟରେ ସରକାର ଜମି ବଦଳରେ ଜମି ଦେବା କଥା ଭାବି ନାହାଁନ୍ତି ।

ସରକାରୀ ତଥ୍ୟ ଅନୁଯାୟୀ କଳିଙ୍ଗନଗରରେ ଏବେ ସୁଦ୍ଧା ୮୧୪ ପରିବାର ବିସ୍ଥାପିତ ହୋଇଛନ୍ତି । ଭବିଷ୍ୟତରେ ଏହା ୫୦୦୦ ପର୍ଯ୍ୟନ୍ତ ବଢିପାରେ ବୋଲି କୁହାଯାଉଛି । ନୀଳାଚଳ ଇସ୍ପାତ ନିଗମ ଦ୍ୱାରା ୬୩୯ ପରିବାର ବିସ୍ଥାପିତ ହୋଇଛନ୍ତି । ସେଥିରୁ ମାତ୍ର ୧୮୨ ଜଣ ଚାକିରୀ ପାଇଛନ୍ତି । ଥଇଥାନ ସମ୍ବନ୍ଧୀୟ ନିର୍ଦ୍ଦେଶନାମା ଅନୁସାରେ ବାକି ୪୫୭ ଜଣକୁ କମ୍ପାନୀ ଚାକିରୀ ଦେଇ ପାରୁନଥିବାରୁ ଆର୍ଥିକ ସହାୟତା ଯୋଗାଇଦେବା କଥା । କିନ୍ତୁ କଳିଙ୍ଗନଗର ଅତିରିକ୍ତ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ଦ୍ୱାରା ତା ୫ । ୧୨ । ୦୫ ରିଖରେ ଜାରୀ

କରାଯାଇଥିବା ବିଜ୍ଞପ୍ତି ଅନୁସାରେ ଉକ୍ତ ୪୫୭ ପରିବାର ବର୍ତ୍ତମାନ ସୁଦ୍ଧା ସହାୟତା ପାଇନାହାନ୍ତି । ଏଠାରେ ସ୍ମରଣଯୋଗ୍ୟ ଯେ ୧୯୯୭ ମସିହାରେଏହି ପରିବାରଗୁଡ଼ିକ ବିସ୍ଥାପିତ ହୋଇଥିଲେ ।

କଳିଙ୍ଗନଗର ବିସ୍ଥାପିତ ପରିବାର ମାନଙ୍କୁ ମିଳିଥିବା ଘରବାଡି ଓ ଚାକିରୀ ସମ୍ବନ୍ଧୀୟ ତଥ୍ୟ ନିମ୍ନୋକ୍ତ ସାରଣୀରୁ ଜାଣିହେବ ।

| କମ୍ପାନୀର ନାମ | ବିସ୍ଥାପିତ ପରିବାରଙ୍କ ସଂଖ୍ୟା | ସିଧା ସଳଖ ଚାକିରୀ ପାଇଥିବା ପରିବାର ସଂଖ୍ୟା | ୧୦ ଡିସିମିଲ ଘରଡିହ ପାଇଥିବା ପରିବାର ସଂଖ୍ୟା | ଘରବାଡି ବାବଦରେ ଜମି ପରିବର୍ତ୍ତେ ଆର୍ଥିକ ସହାୟତା ନେଇଥିବା ପରିବାର ସଂଖ୍ୟା |
|---|---|---|---|---|
| ନୀଳାଚଳ | ୬୩୯ | ୧୮୨ | ୧୩୧ | ୫୦୮ |
| ମେସ୍କୋ | ୫୩ | ୪୭ | ୫୩ | - |
| ଜିନ୍ଦଲ | ୬୦ | - | ୫୧ | ୮ |
| ଭିସା | ୨୩ | - | ୩ | ୨୦ |
| ରୋହିତ | ୧୨ | - | - | ୧୨ |
| ରାସ୍ତା | ୨୮ | - | - | ୨୮ |

ଉତ୍ସ : ଅତିରିକ୍ତ ଜିଲ୍ଲାପାଳଙ୍କ ଅଫିସ୍ କଳିଙ୍ଗନଗର

## ଥଇଥାନ କଲୋନୀର ଚିତ୍ର

ଜାତୀୟ ରାଜପଥ ୨୦୦ର ମିରିଗଚରା ଛକ ଠାରେ ଭାଙ୍ଗିଯାଇଥିବା ରାସ୍ତାରେ ପ୍ରାୟ ଦୁଇ କିଲୋମିଟର ଗଲେ ଗୋବରଘାଟୀ କଲୋନୀ । ମିରିଗଚରା ଛକଠାରେ ଏକ ବିରାଟ ଚକ ଚକିଆ ତୋରଣ ଲଗାଯାଇଛି ଏବଂ ସେଥିରେ ଲେଖାହୋଇଛି- ସ୍ୱାଗତମ୍ ଗୋବରଘାଟୀ । ତୋରଣକୁ ଦେଖି ଏକ ସମୃଦ୍ଧ କଲୋନୀର ଭାବନା ମନକୁ ଆସେ, କିନ୍ତୁ କଲୋନୀର ବାସ୍ତବ ଚିତ୍ର ସଂପୂର୍ଣ୍ଣ ଭିନ୍ନ । କଲୋନୀ ଭିତରକୁ ପଶିଗଲେ ୩ ।୪ ଟି ପକ୍କା ଘର ଛଡା ଆଉ ସବୁ ଛୋଟ ଛୋଟ ମାଟି ଓ ନଡା ଛପର ଘର ଆଖିରେ ପଡିବ । ଏବେ କଲୋନୀରେ ୧୨୦ ଟି ପରିବାର ରହୁଛନ୍ତି । ଏମାନେ ସମସ୍ତେ ନୀଳାଚଳ ଇସ୍ପାତ୍ ପ୍ରକଳ୍ପ ଦ୍ୱାରା ବିସ୍ଥାପିତ; ଖଣ୍ଡିଆପୁସି, ମାଧପୁର ଆଦି ଗାଁର ବାସିନ୍ଦା । ୧୯୯୭ ମସିହାରୁ କଲୋନୀରେ ରହୁଛନ୍ତି,

ଅନ୍ୟ ବିସ୍ଥାପିତ ପରିବାରମାନେ କଲୋନୀରେ ନ ରହି ସ୍ୱ-ଥଇଥାନ ପାଇଁ ଟ ୫୦୦୦୦/- କ୍ଷତିପୂରଣ ନେଇ ଅନ୍ୟତ୍ର ରହୁଛନ୍ତି । କଲୋନୀର ଆଖପାଖରେ ଜୀବିକା ନିର୍ବାହ କରିବାର ଅସୁବିଧା ହେତୁ ପ୍ରାୟ ୭୦ ଭାଗ ଲୋକ କଲୋନୀରେ ରହିବାକୁ ପସନ୍ଦ କଲେ ନାହିଁ । ଯୋଉମାନେ ଜମି ବାବଦରେ କ୍ଷତିପୂରଣ ଟଙ୍କା ପାଇଥିଲେ, କଳିଙ୍ଗନଗର ଅଞ୍ଚଳରେ ଜମିର ଦାମ ବଢିଯିବାରୁ କମ୍ ଦାମରେ ଜମି ମିଳିବାର ଆଶାରେ ଅନ୍ୟତ୍ର ପଳେଇଲେ । କଲୋନୀରେ ରହୁଥିବା ୧୨୦ ପରିବାର ମଧ୍ୟରୁ ମାତ୍ର ୨୫ ପରିବାରକୁ ନୀଳାଚଳରେ ଚାକିରୀ ମିଳିଛି । ବାକିମାନେ ପଥର କ୍ରସରରେ କାମ କରିବାକୁ ଯାଆନ୍ତି । ଦିନକୁ ହାରାହାରି ୪୦-୫୦ ଟଙ୍କା ରୋଜଗାର କରନ୍ତି । ସେତକ ପାଇଁ ବି ୧୪-୧୫ କି.ମି. ଦୂର ଯିବାକୁ ପଡେ । କାରଣ ଆଖପାଖରେ କାମଧନ୍ଦାର କିଛି ସୁବିଧା ନାହିଁ । ଏହି ବିସ୍ଥାପିତ ପରିବାର ଗୁଡିକ ଯଦିଓ ଦିନ ମଜୁରିଆ ଭାବେ କାମ କରି ପେଟ ପୋଷୁଛନ୍ତି, ସେମାନଙ୍କୁ କିନ୍ତୁ ବିପିଏଲ୍ ପରିବାର ବୋଲି ଗଣନା କରାଯାଇନାହିଁ ।

ପାଣିର ସୁବିଧା ପାଇଁ ୧୨୦ ପରିବାର ଲାଗି ୫ଟି ନଳକୂପ ଅଛି । ସେଥିରୁ ୨ଟା ଅକାମୀ । କଲୋନୀ ଭିତରେ ମୋରମ୍ ରାସ୍ତା ଯାଇଛି । ବର୍ଷାଦିନେ କିନ୍ତୁ ରାସ୍ତାଟି ଧୋଇଯାଏ । ବିଜୁଳି ତାର କଲୋନୀ ପର୍ଯ୍ୟନ୍ତ ସଂଯୋଗ କରାଯାଇଛି । ହେଲେ ଲୋକଙ୍କ ପାଖରେ ପଇସା ନାହିଁ ନିଜଘରେ ବିଜୁଳି ସଂଯୋଗ କରିବାକୁ । କଲୋନୀରେ ପ୍ରାଥମିକ ସ୍ୱାସ୍ଥ୍ୟ ସେବାର କୌଣସି ବନ୍ଦୋବସ୍ତ ନାହିଁ । ନିକଟବର୍ତ୍ତୀ ସ୍ୱାସ୍ଥ୍ୟ କେନ୍ଦ୍ର କଲୋନୀଠାରୁ ଅନ୍ୟୂନ ୧୫-୨୦ କି.ମି. ଦୂର । କଲୋନୀରେ ପ୍ରାଥମିକ ସ୍କୁଲ (୫ମ ଶ୍ରେଣୀ ପର୍ଯ୍ୟନ୍ତ) ଅଛି । ତାପର ଶ୍ରେଣୀରେ ପଢିବାକୁ ହେଲେ ୫-୬ କି.ମି. ଦୂର ଯିବାକୁ ହୁଏ । ବିସ୍ଥାପିତ ପରିବାରମାନଙ୍କୁ ଘରବାଡି ବାବଦ ଦିଆଯାଇଥିବା ୧୦ ଡେସିମିଲ ଜମିର ପଟ୍ଟା ଆଜି ପର୍ଯ୍ୟନ୍ତ ଦିଆଯାଇନାହିଁ । ତା ବଦଳରେ ତହସିଲଦାର ସୁକିନ୍ଦାଙ୍କ ତରଫରୁ ଭୂ-ବନ୍ଦୋବସ୍ତ ନିମିତ୍ତ ଅବଗତି ପତ୍ର (An Intimation slip for settlement of land) ଦିଆଯାଇଛି । ସେଥିରେ ନିର୍ଦ୍ଦେଶ ରହିଛି, ରାଜସ୍ୱ ଅଧିକାରୀଙ୍କ ପୂର୍ବ ଅନୁମତି ବିନା ଜମି ହସ୍ତାନ୍ତର କରିପାରିବେ ନାହିଁ ।

ଥଇଥାନ ନିର୍ଦ୍ଦେଶନାମାରେ ଗୃହନିର୍ମାଣ ପାଇଁ ଟ୫୦,୦୦୦/- ଙ୍କା ସହାୟତା ରାଶି ଦେବାର ବନ୍ଦୋବସ୍ତ ଅଛି । ଏହି ରାଶି ଦେବାପାଇଁ ଅନେକ ସର୍ତ୍ତାବଳୀ ରହିଛି । ଯଥା- ଘରଖାଲି କରି ସାମୟିକ ଆଶ୍ରୟ ସ୍ଥଳୀକୁ ଯିବାପରେ ଏବଂ ନୂଆଘର ତିଆରି କାମ ଆରମ୍ଭ କଲାପରେ ଯାଇ ସହାୟତା ରାଶି ମିଳିବ । ତାହା ପୁଣି ଏକାଥରକେ ନ ମିଳି, କିସ୍ତି ଅନୁସାରେ ମିଳିବ । ବିସ୍ଥାପିତ ପରିବାରଙ୍କ ପାଇଁ ଏସବୁ ସର୍ତ୍ତାବଳୀ ବୋଝ ଉପରେ କୋରଡା ଭଳି ।

## ସଂଘର୍ଷର ସୂତ୍ରପାତ

### ପ୍ରଥମ ପର୍ଯ୍ୟାୟ

ପ୍ରଥମ ଅବସ୍ଥାରେ, ଶିଳ୍ପାଞ୍ଚଳର ପରିକଳ୍ପନାକୁ ଲୋକେ ସ୍ୱାଗତ କଲେ; ବିଶ୍ୱାସ ଥିଲା ଯେ ଏହା ଫଳରେ ଅଞ୍ଚଳର ବିକାଶ ହେବ, ସ୍ଥାନୀୟ ବାସିନ୍ଦାଙ୍କୁ ଚାକିରୀ ମିଳିବ, ସେମାନଙ୍କ ଜୀବନର ମାନ ଉନ୍ନତ ହେବ । ତେଣୁ ୧୯୯୨-୯୪ ରେ ଇଡ୍‌କୋ ଯେତେବେଳେ ଜମି ଅଧିଗ୍ରହଣ କଲା ଲୋକେ ବିନା ପ୍ରତିବାଦରେ ଜମିର କ୍ଷତିପୂରଣ ନେଲେ । ଶିଳ୍ପ ପ୍ରକଳ୍ପ ଆରମ୍ଭ ହେଲେ ସେମାନଙ୍କୁ ଚାକିରୀ ମିଳିବାର ସରକାରୀ ଅଧିକାରୀମାନେ ଦେଇଥିବା ବାଚନିକ ପ୍ରତିଶ୍ରୁତିକୁ ସେମାନେ ବିଶ୍ୱାସ କଲେ । ଏବଂ ୧୯୯୭ ମସିହାରେ ପ୍ରଥମ ଦଫା ବିସ୍ଥାପନ ଆରମ୍ଭ ହେବା ପର୍ଯ୍ୟନ୍ତ ପୂର୍ବବତ ଜମି ଚାଷ କରିବାକୁ ଲାଗିଲେ ।

୧୯୯୭ରେ କମ୍ପାନୀମାନଙ୍କୁ କିଛି ଜମି ହସ୍ତାନ୍ତର କରାଗଲା । ବିସ୍ଥାପିତ ପରିବାର ଗୁଡିକୁ ତ୍ରିଜଙ୍ଗା ଓ ଗୋବରଘାଟୀ କଲୋନୀରେ ଥଇଥାନ କରିବାର ବନ୍ଦୋବସ୍ତ କରାଗଲା । ପ୍ରତି ବିସ୍ଥାପିତ ପରିବାରକୁ ଘରବାଡି ପାଇଁ ୧୦ ଡିସିମିଲ ଜମି କଲୋନୀମାନଙ୍କରେ ଆବଣ୍ଟିତ କରାଗଲା । ନୀଳାଚଳ ଇସ୍ପାତ ପ୍ରକଳ୍ପ ଦ୍ୱାରା ବିସ୍ଥାପିତ ଲୋକମାନଙ୍କୁ ଗୋବରଘାଟୀ କଲୋନୀ ଏବଂ ମେସ୍କୋ ଓ ଜିନ୍ଦଲ ଦ୍ୱାରା ବିସ୍ଥାପିତମାନଙ୍କୁ ତ୍ରିଜଙ୍ଗା କଲୋନୀକୁ ଉଠେଇନେବାର ବ୍ୟବସ୍ଥା ହେଲା । ଗୋବରଘାଟୀ କଲୋନୀକୁ ସ୍ଥାନାନ୍ତର ହେବାକୁ ଥିବା ବିସ୍ଥାପିତ ପରିବାର ଗୁଡିକ, ବିସ୍ଥାପନ ପୂର୍ବରୁ ଚାକିରୀର ନିର୍ଭର ପ୍ରତିଶ୍ରୁତି ଦାବୀ କରିବା ହେତୁ ଗଣ୍ଡଗୋଳର ସୂତ୍ରପାତ ହେଲା । ନିର୍ଭର ପ୍ରତିଶ୍ରୁତି ନ ମିଳିବା ହେତୁ ଲୋକେ ଧାରଣାରେ ବସିଲେ । ଘର ନ ଛାଡିବାକୁ ଅଡି ବସିଲେ । ଘଟଣା କ୍ରମଶଃ ଅପ୍ରୀତିକର ଓ କ୍ରୁର ରୂପ ଧାରଣ କଲା, ଯେତେବେଳେ ବଳ ପୂର୍ବକ ପୁଲିସ ଲଗାଇ ଲୋକମାନଙ୍କୁ ଘରୁ ବାହାର କରାଗଲା । କୁହାଯାଏ, ୬୦ ଜଣକୁ ଆରେଷ୍ଟ କରାଯାଇଥିଲା ଏବଂ ବୁଲଡୋଜର ଲଗାଇ ଘର ଭାଙ୍ଗି ଦିଆଯାଇଥିଲା । ଲୋକଙ୍କର ବିଶ୍ୱାସରେ ଧକ୍କା ଲାଗିଲା ।

### ଦ୍ୱିତୀୟ ପର୍ଯ୍ୟାୟ : (୨୦୦୪ ର ପରବର୍ତ୍ତୀ ଘଟଣା)

୧୯୯୭ ରୁ ୨୦୦୪ ମଧବର୍ତ୍ତୀ ସମୟର ଚିତ୍ର ଅସ୍ପଷ୍ଟ । ମୁଖ୍ୟସ୍ରୋତ ରାଜନୈତିକ ଦଳର ନେତାମାନଙ୍କ ବିଶ୍ୱାସଘାତକତା ବିଷୟରେ କାଁ ଭାଁ ଅଭିଯୋଗ ବ୍ୟତୀତ, ସେ ସମୟ ବିଷୟରେ ଅଧିକ କିଛି କୁହାଯାଇପାରିବ ନାହିଁ । ଆପାତତଃ ଉଭୟ ପକ୍ଷରୁ ନୀରବତାର

ବାତାବରଣ ଥିଲା ବୋଲି ଜଣାଯାଏ । ସେ ସମୟ ବିଷୟରେ ଲୋକମାନଙ୍କୁ ପଚାରିଲେ ସେମାନେ କୁହନ୍ତି ଯେ ଏତେ ବଡ ବିପଦ ସେମାନଙ୍କ ଜୀବନ ଜୀବିକା ଉପରକୁ ଆସୁଛି ବୋଲି ସେମାନେ ବିଶ୍ୱାସ କରିପାରିନଥିଲେ ।

କଳିଙ୍ଗନଗର ଶିଳ୍ପାଞ୍ଚଳ ଦ୍ୱାରା କ୍ଷତିଗ୍ରସ୍ତ ଜନ ସମୁଦାୟଙ୍କ ସ୍ୱାର୍ଥ ସୁରକ୍ଷା ଲାଗି ୨୦୦୪ ମସିହାରେ 'ସୁକିନ୍ଦା ଉପତ୍ୟକା ଆଦିବାସୀ ହରିଜନ ଏକତା ପରିଷଦ' ନାମକ ଏକ ସଂଗଠନ ଗଠିତ ହେଲା । ପରବର୍ତ୍ତୀ ସମୟରେ ଏହା 'ବିସ୍ଥାପନ ବିରୋଧି ଜନ ମଂଚ, ସୁକିନ୍ଦା' ନାମରେ ନାମିତ ଏବଂ ଆଜି ପର୍ଯ୍ୟନ୍ତ ସେହି ନାମ ହିଁ ରହିଛି । ୨୦୦୪ ଅକ୍ଟୋବରରେ, ସୁରକ୍ଷା ପରିଷଦ, ମୁଖ୍ୟମନ୍ତ୍ରୀଙ୍କ ଉଦ୍ଦେଶ୍ୟରେ ଲିଖିତ ଏକ ଖୋଲା ଚିଠି ମାଧ୍ୟମରେ, ଶିଳ୍ପାଞ୍ଚଳ ଜନିତ ଅସୁବିଧା ଓ ଆଶଙ୍କା ବ୍ୟକ୍ତ କରିବା ସହ କେତେକ ଦାବି ମଧ୍ୟ ଉପସ୍ଥାପିତ କଲେ : ବିସ୍ଥାପିତ ହବାକୁ ଥିବା ଲୋକଙ୍କ ପାଇଁ ୫ ଦଫା ଦାବି ଓ ବିସ୍ଥାପିତ ହୋଇ ସାରିଥିବା ଲୋକଙ୍କ ପାଇଁ ୬ ଦଫା ଦାବି । ମୁଖ୍ୟ ଦାବି ଗୁଡିକ ଥିଲା -

୧. ସୁକିନ୍ଦା ଉପତ୍ୟକାର ସମସ୍ତ ଆଦିବାସୀ ହରିଜନ ଲୋକଙ୍କ ଚାଷ ଜମିରେ ପ୍ରସ୍ତାବିତ କାରଖାନା ପ୍ରତିଷ୍ଠା ବାତିଲ କରାଯାଉ ।

୨. ୧୯୮୦ ମସିହା ପୂର୍ବରୁ ସୁକିନ୍ଦା ଉପତ୍ୟକାରେ ବାସ କରୁଥିବା ଲୋକଙ୍କୁ ସେମାନଙ୍କ ଦଖଲରେ ଥିବା ସବୁ ଜମି ଗୁଡିକର ବନ୍ଦୋବସ୍ତ ଏବଂ ପଟା ପ୍ରଦାନ କରାଯାଉ ।

୩. ପ୍ରକଳ୍ପ ସ୍ଥାପନ ନିମନ୍ତେ ଅଧିକୃତ କିନ୍ତୁ ବର୍ତ୍ତମାନ ସୁଦ୍ଧା ବ୍ୟବହୃତ ହୋଇପାରିନଥିବା ଜମିକୁ ପ୍ରକୃତ ଜମି ମାଲିକଙ୍କୁ ଫେରାଇ ଦିଆଯାଉ ।

୪. ସରକାରଙ୍କ ଉଚ୍ଛେଦ ନୀତିରେ ଆଦିବାସୀ / ଦଳିତ ଗ୍ରାମ ଗୁଡିକୁ ହିଁ ଶିଳ୍ପ ପ୍ରତିଷ୍ଠା ପାଇଁ ବାଛି ବାଛି ଉଚ୍ଛେଦ କରିବା ନୀତି ପରିବର୍ତ୍ତନ କରାଯାଉ ।

୫. ବାସଚ୍ୟୁତ ପରିବାର ମାନଙ୍କୁ ଘରଡିହ ବାବଦରେ ୧୦ ଡିସିମିଲ ପରିବର୍ତ୍ତେ ୧ ଏକର ଜମି ଯୋଗାଇ ଦିଆଯାଉ ।

୬. ବିସ୍ଥାପିତ ଲୋକଙ୍କ ଥଇଥାନ କାର୍ଯ୍ୟକ୍ରମରେ ପରିଷଦର ମତାମତକୁ ଗ୍ରହଣ କରାଯାଉ ।

୭. ବିସ୍ଥାପିତ ପରିବାରକୁ ଅନ୍ୟୁନ ୫ ଏକର ଚାଷଜମି ଯୋଗାଇ ଦିଆଯାଉ ଏବଂ

ସମସ୍ତଙ୍କ ପାଇଁ ଉପଯୁକ୍ତ କର୍ମ ସଂସ୍ଥାନର ବ୍ୟବସ୍ଥା କରାଯାଉ ଇତ୍ୟାଦି ।

୨୦୦୫ ମସିହାରେ ବିସ୍ଥାପନ ବିରୋଧି ଜନମଂଚ, ସୁକିନ୍ଦା କଂମ୍ପାନୀମାନଙ୍କର ଶିଳ୍ପ ସ୍ଥାପନା ନିମିତ୍ତ ବିଭିନ୍ନ କାର୍ଯ୍ୟକୁ ପ୍ରତିରୋଧ କଲେ, ଯଥା: ଜମି ସର୍ଭେ, ଭୂମିପୂଜା, ଜମି ସମତଳ, ପାଚେରୀ ନିର୍ମାଣ ଇତ୍ୟାଦି । ନିର୍ମାଣ ସ୍ଥଳରେ ପ୍ରତିବାଦ ସଭା ଓ ଧାରଣାମାନ ସଂଗଠିତ କଲେ । ଲୋକେ କୁହନ୍ତି ଯେ ୨୦୦୫ ଏପ୍ରିଲରେ ସରକାର ପରିବାର ସର୍ଭେ ପାଇଁ ନୋଟିସ୍ / ବିଜ୍ଞପ୍ତି ଜାରୀ କରିଥିଲେ । କିନ୍ତୁ ପଟ୍ଟାପାଇଁ ଦାବି ପୂରଣ ନ ହେବା ହେତୁ, ମଂଚ ସରକାରଙ୍କ ସହ ଅସହଯୋଗ କଲେ । ଉଲ୍ଲେଖ ଯୋଗ୍ୟ ଯେ ପୂର୍ବରୁ ପରିବାର ସର୍ଭେ ୧୯୯୬ ମସିହାରେ ହୋଇଥିଲା । ୨୦୦୪-୦୫ ବେଳକୁ ପରିବାର ସଂଖ୍ୟା ବଢିଯାଇଛି ।

ଏସବୁ ମଧ୍ୟରେ, ୨୦୦୫ ମେ ୯ ତାରିଖର ଘଟଣା ଅଧିକ ଗୁରୁତ୍ୱ ବହନ କରେ । ସରକାର ଓ ତାଙ୍କ ବାହୁଛାୟା ତଳେ ଥିବା କମ୍ପାନୀମାନଙ୍କ ବିରୁଦ୍ଧରେ କୁହୁଳୁଥିବା ଜନ ଅସନ୍ତୋଷ ଯେ ଚରମ ବିନ୍ଦୁରେ ପହଞ୍ଚିଛି, ଏ ଘଟଣା ତାର ପରିଚାୟକ । ମେ ୯ ତାରିଖ ଦିନ ମହାରାଷ୍ଟ୍ର ସିମ୍‌ଲେସ କମ୍ପାନୀର ଭୂମିପୂଜା କାର୍ଯ୍ୟକ୍ରମ ଥିଲା । ଖବରପାଇ ଲୋକ ସେ ସ୍ଥାନରେ ଏକଜୁଟ ହେଲେ । କାମ ବନ୍ଦକରିବା ଓ ପ୍ରତିବାଦ ବ୍ୟକ୍ତ କରିବା ଥିଲା ସେମାନଙ୍କ ଉଦ୍ଦେଶ୍ୟ । ଲୋକେ ନିରସ୍ତ୍ର ଥିଲେ ଏବଂ ଉପସ୍ଥିତ ସରକାରୀ ଅଧିକାରୀମାନେ ଏହା ସ୍ୱୀକାର କରନ୍ତି । ପ୍ରତିବାଦକୁ ଦେଖି କଳିଙ୍ଗନଗର ଏ.ଡି.ଏମ୍. (ଅତିରିକ୍ତ ଜିଲ୍ଲାପାଳ) ଶ୍ରୀ ସନ୍ତାନଗୋପାଳନ ଲୋକମାନଙ୍କ ସହ ଆଲୋଚନା ପାଇଁ ଆସିଲେ । ମହାରାଷ୍ଟ୍ର ସିମ୍‌ଲେସ୍ କମ୍ପାନୀ କର୍ତ୍ତୃପକ୍ଷଙ୍କୁ ସୁରକ୍ଷା ଦେବାପାଇଁ ସ୍ଥାନୀୟ ପୁଲିସ ଉପସ୍ଥିତ ଥିଲେ, ଯଦିଓ ସଂଖ୍ୟାରେ ବେଶୀ ନ ଥିଲେ । ଲୋକମାନେ ନିଜର ଦାବିକୁ ଏଡିଏମ୍‌ଙ୍କ ସାମନାରେ ଦୋହରେଇବା ସହ ଜାଗାରୁ ହଟିଲେ ନାହିଁ । ଅଭିଯୋଗ ହୁଏ ଯେ ଏଡିଏମ୍ ଲାଠିଚାର୍ଜ ପାଇଁ ଆଦେଶ ଦେଲେ ଏବଂ ଅତିଉତ୍ସାହୀ ହୋଇ ନିଜେ ଧାରଣାରେ ବସିଥିବା ମହିଳାମାନଙ୍କୁ ଧକ୍କା ମରାମରି କଲେ । ଲୋକଙ୍କ ଦୃଷ୍ଟିରେ, ଏଡିଏମ୍‌ଙ୍କ ଏଭଳି କାର୍ଯ୍ୟ ଉସ୍କାଣୀ ଛଡା ଅନ୍ୟ କିଛି ନ ଥିଲା । ଫଳତଃ ଗଣ୍ଡଗୋଳର ସୂତ୍ରପାତ ହେଲା । ଲୋକେ ଟେକା ମାରିବା ଆରମ୍ଭ କଲେ ଓ ଏଡିଏମ୍‌ଙ୍କ ଗାଡି ଭାଙ୍ଗି ଦେଲେ । ଗଣ୍ଡଗୋଳରେ ଏଡିଏମ୍ ମାଡ ଖାଇଲେ ଏବଂ କଳିଙ୍ଗନଗର ଥାନା ଅଧିକାରୀ ଏଡିଏମ୍‌ଙ୍କୁ ରକ୍ଷା କରିବାକୁ ଯାଇ ମାଡ ଖାଇଲେ; ଉଭୟ ଗୁରୁତର ଆହତ ହେଲେ । ଲୋକମାନଙ୍କର ରାଗକୁ ଦେଖି ପୁଲିସ ପଛଘୁଞ୍ଚା ଦେଲା ଏବଂ ସଂଧ୍ୟାରେ ଅଧିକ ପୁଲିସ ବଳ ସହ ଗାଁରେ ପହଞ୍ଚିଲେ । ଗାଁ ଗାଁରେ ପଶି ଦମନ ଆରମ୍ଭ କଲେ ।

ଡରରେ ପୁରୁଷ ଲୋକ ଗାଁ ଛାଡି ପାଖ ଆଖ ଜଙ୍ଗଲ ପାହାଡରେ ଲୁଚିଲେ । ଫଳତଃ ପୁଲିସ ସମସ୍ତ ରାଗ ମହିଳା ଓ ପିଲାମାନଙ୍କ ଉପରେ ଶୁଝେଇଲେ । ୨୫ ଜଣ ମହିଳା ଆରେଷ୍ଟ ହେଲେ । ପୁଲିସ ଆତଙ୍କର ଖବରପାଇ ଅନ୍ୟାନ୍ୟ ଗାଁରେ ଲୋକ ଗାଁ ଛାଡି ଚାଲିଗଲେ ଓ ଜଙ୍ଗଲରେ ଲୁଚିଲେ । ଅଭିଯୋଗ ହୁଏ ଯେ ଏ ପରିସ୍ଥିତିରେ ଦେଖାଶୁଣା ଅଭାବରୁ ୨ ଜଣ ଶିଶୁ ମରିଗଲେ । ପୁଲିସଠାରୁ ଭୀଷଣ ମାଡ ଖାଇଥିବା ଜଣେ ବୁଢା ଲୋକ ଚିକିତ୍ସା ଅଭାବରୁ ମରିଗଲେ ।

ମେ ୯ ଘଟଣା ପରେ, ପ୍ରଶାସନ ଓ ଲୋକଙ୍କ ଭିତରେ ବିଶ୍ୱାସ ସଂପୂର୍ଣ୍ଣ ତୁଟି ଯାଇଥିଲା । ଲୋକେ ଭାବିଲେ ଯେ ସରକାର ସେମାନଙ୍କୁ ଧୋକା ଦେଇଛି; ପ୍ରଶାସନ ସେମାନଙ୍କର ଶତ୍ରୁ, କମ୍ପାନୀର ମିତ୍ର । ଅନ୍ୟ ପକ୍ଷରେ ନିରୀହ ଓ ଶାନ୍ତି ପ୍ରିୟ ଆଦିବାସୀମାନଙ୍କର ପ୍ରବଳ ପ୍ରତିବାଦ ପ୍ରଶାସନକୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । ସମ୍ଭବତଃ, ପ୍ରତିରୋଧକୁ ଖତମ କରିବାକୁ ଉପାୟ ଚିନ୍ତା କରୁଥିଲେ ।

୨୦୦୫ ଜୁଲାଇ ୨୭ରେ ଯାଜପୁର ରୋଡଠାରେ ଟାଟା ପ୍ରକଳ୍ପ ପାଇଁ ଜନ ଶୁଣାଣି ଉଦ୍ଦେଶ୍ୟରେ ନୋଟିସ ଜାରୀ କରାଗଲା । କିନ୍ତୁ ଜୁଲାଇ ୨୩ରେ (୪ଦିନ ପୂର୍ବରୁ) ଜିଲ୍ଲାପାଳ ଓ ଏସ୍‌ପିଙ୍କ ଉପସ୍ଥିତିରେ ଟାଟା କମ୍ପାନୀ ଭୂମି ପୂଜା ପାଇଁ ଆସିଲେ । ପ୍ରାୟ ୩୦୦୦ ଲୋକ ପ୍ରତିବାଦ ଶୋଭାଯାତ୍ରା କଲେ । ପ୍ରଶାସନ କେତେତ କର୍ମୀ ଓ ନେତାଙ୍କ ବିରୁଦ୍ଧରେ ମକଦ୍ଦମା ଦାୟର କଲା ।

ପୁଣି, ୨୦୦୫ ଅକ୍ଟୋବର ୭ ରେ ଟାଟା କମ୍ପାନୀ ପୁଲିସ ଓ ଜିଲ୍ଲା ପ୍ରଶାସନ ସହାୟତାରେ ଭୂମିପୂଜା ପାଇଁ ଆସିଲେ । ଲୋକେ ପ୍ରତିବାଦ କଲେ । ଆନ୍ଦୋଳନକାରୀମାନେ ଜଣେ କନେଷ୍ଟବଲକୁ ପିଟିବାର ଅଭିଯୋଗ ହୁଏ । ପୁଲିସ ଅନୁସାରେ ଲୋକେ କନେଷ୍ଟବଲଙ୍କର ବଂଧୁକ ଛଡେଇ ନେଇଗଲେ ।

ଅକ୍ଟୋବର ୨୫ରେ, ଜନମଞ୍ଚର ଅନ୍ୟତମ ନେତା ଶ୍ରୀ ରବିନ୍ଦ୍ର ଜାରିକାଙ୍କୁ ଯାଜପୁର ପୁଲିସ ଭୁବନେଶ୍ୱରରେ ଗିରଫ କଲା । ଆଦିବାସୀ ସଂଗଠନମାନଙ୍କର ଏକ ସମ୍ମିଳନୀରେ ଯୋଗ ଦେବାପାଇଁ ସେ ଭୁବନେଶ୍ୱର ଆସିଥିଲେ । ପୁଲିସ ଶ୍ରୀ ଜାରିକାଙ୍କୁ ଯୋଉ ଢଙ୍ଗରେ ଗିରଫ କଲା ତାହା ଏକ ପ୍ରଶ୍ନବାଚୀ ଥିଲା । ଶ୍ରୀ ଜାରିକାଙ୍କ ମାମଲାରେ ପୁଲିସର ଯଥେଚ୍ଛାଚାର ଓ ପୁଲିସ ବଳ ପ୍ରୟୋଗ କରି ସମସ୍ତ ଗଣତାନ୍ତ୍ରିକ ଆନ୍ଦୋଳନକୁ ଦବେଇ ଦେବାର

ସରକାରୀ ନୀତି ବିରୁଦ୍ଧରେ ପି.ୟୁ.ସି.ଏଲ. ସମେତ ଅନ୍ୟାନ୍ୟ ମାନବ ଅଧିକାର ସଂଗଠନ ପ୍ରତିବାଦ କରିଥିଲେ ।

ଅକ୍ଟୋବର ୨୭ ରେ ରବିନ୍ଦ୍ର ଜାରିକାଙ୍କ ଗିରଫକୁ ବିରୋଧ କରି ଲୋକେ କଳିଙ୍ଗନଗର ଥାନା ଘେରାଉ କଲେ । ଏହାପରେ ବିସ୍ଥାପନ ବିରୋଧି ଜନମଞ୍ଚର ଅନ୍ୟନେତା ମାନଙ୍କୁ ଗିରଫ କରିବା ପାଇଁ ପୋଲିସ ଚେଷ୍ଟା ଚଳେଇଛି । ନଭେମ୍ବର ୧୭ରେ ଲୋକେ ପୁଣି ମହାରାଷ୍ଟ୍ର ସିମ୍‌ଲେସର ନିର୍ମାଣ କାମ ବନ୍ଦ କଲେ । ସେହି ଦିନଠାରୁ ଜାନୁୟାରୀ ୨ ପର୍ଯ୍ୟନ୍ତ କୌଣସି ନିର୍ମାଣ କାର୍ଯ୍ୟ ହୋଇନଥିଲା । ଆନ୍ଦୋଳନ ଆଗକୁ ବଢି ଚାଲିଥିଲା ଏବଂ ଲୋକଙ୍କ ମନୋବଳ ଉଚ୍ଚ ଥିଲା । ତାଙ୍କ ପାଇଁ ଯେ ଏମିତି ଏକ ମର୍ମନ୍ତୁଦ ଘଟଣା ଅପେକ୍ଷା କରି ରହିଥିଲା, ସେମାନେ ଦେଖିପାରି ନ ଥିଲେ ।

## ଗୁଳିକାଣ୍ଡ : ୨ ଜାନୁୟାରୀ ୨୦୦୬

ଜାନୁୟାରୀ ୨ ତାରିଖ ଦିନ ପ୍ରକଳ୍ପ ସ୍ଥାନରେ ଟାଟା କମ୍ପାନୀ ଭୂମି ସମତଳ କାମ ଆରମ୍ଭ କଲେ । କଲେକ୍ଟର, ଏସ୍.ପି ସମେତ ଜିଲ୍ଲାର ପଦସ୍ଥ ଅଧିକାରୀମାନେ ସେଠାରେ ଉପସ୍ଥିତ ଥିଲେ । ପ୍ରତିବାଦ କରିବା ଉଦ୍ଦେଶ୍ୟରେ ସ୍ଥାନୀୟ ଲୋକେ ଏକଜୁଟ୍ ହେଲେ, ମହିଳା ଓ ପିଲା ସମେତ ପ୍ରାୟ ୩୦୦-୪୦୦ ଲୋକ ଥିଲେ । ସେମାନଙ୍କ ମଧ୍ୟରୁ କେତେକଙ୍କ ହାତରେ ଧନୁ, ତୀର ଟାଙ୍ଗିଆ ଆଦି ପାରମ୍ପରିକ ଅସ୍ତ୍ର ଥିଲା (ସାଧାରଣତଃ ଆଦିବାସୀମାନେ ତାହା ଧରିଥାନ୍ତି) । ଲୋକମାନେ ଚମ୍ପାକୋଇଲା ଗାଁ କଡରେ ରୁଣ୍ଡ ହୋଇଥିଲେ । ସବୁ ଦୃଷ୍ଟିରୁ ଦେଖିଲେ, ପୁଲିସ ବନ୍ଦୋବସ୍ତ ବ୍ୟାପକ ଥିଲା । ଜମି ଖଣ୍ଡେ ସମତଳ କରିବା ଲାଗି ଏସ୍.ପି ୧୦ ପ୍ଲାଟୁନ୍ (ପ୍ରାୟ ୩୦୦) ପୁଲିସ ମଗେଇଥିଲେ । ନିଜର ଶକ୍ତି ପ୍ରଦର୍ଶନ ସହ ଏକ ନିର୍ଣ୍ଣାୟକ ଲଢ଼େଇ ପାଇଁ ପୁଲିସ ବାହିନୀ ପ୍ରସ୍ତୁତ ହୋଇ ଆସିଥିଲେ । ଅଣ ସରକାରୀ ପୁଲିସ ସୂତ୍ର ଅନୁସାରେ ଟାଟା ପ୍ରକଳ୍ପ ସ୍ଥାନର ତିନି ଦିଗରେ ତିନି ତିନି ପ୍ଲାଟୁନ ପୁଲିସ ମୁତୟନ କରାଯାଇଥିଲା । ପ୍ରକଳ୍ପ ସ୍ଥାନଟିକୁ ଲମ୍ବା ଦଉଡି ସାହାଯ୍ୟରେ ଘେରଉ କରାଯାଇଥିଲା । ଦଉଡି ଘେରର ଧାରେ ଧାରେ ୯ ପ୍ଲାଟୁନ ପୁଲିସ ମୁତୟନ କରାଯାଇଥିଲା ଏବଂ ୧ ପ୍ଲାଟୁନ ପୋଲିସ ଉପସ୍ଥିତ ଉଚ୍ଚ ପଦସ୍ଥ ଅଧିକାରୀଙ୍କୁ ସୁରକ୍ଷା ଦେବା ପାଇଁ ମହଜୁଦ୍ ଥିଲେ ।

ସେଦିନର ଘଟଣା ବାବଦରେ ଅନେକ ବୟାନ ଅଛି । ଆମ ଦୃଷ୍ଟିରୁ ସବୁଠୁଁ ସମ୍ଭାବ୍ୟ ବୟାନଟି ଏଠାରେ ଉପସ୍ଥାପନ କରୁଛୁ । ଆନ୍ଦୋଳନକାରୀମାନେ ଜମି ସମତଳ କାମ ବନ୍ଦ

କରିବା ପାଇଁ ଦଉଡି ଘେର ପାର ହୋଇ ଯିବାକୁ ଚାହୁଁଥିଲେ । ପୁଲିସ ସେମାନଙ୍କୁ ବାଧା ଦେବାକୁ ଚେଷ୍ଟା କରୁଥିଲା । ଫଳତଃ ସେହି ସ୍ଥାନରେ ଉଭୟ ପାଖରୁ ଠେଲା ପେଲା ଲାଗିଲା । ପୁଲିସ ଲୋକମାନଙ୍କୁ ଡରେଇବା ପାଇଁ 'ଷ୍ଟନ୍' ସେଲ (Stun Shell) ବ୍ୟବହାର କଲେ (ଷ୍ଟନ୍ ସେଲ ଫୁଟିଲେ ପ୍ରଚଣ୍ଡ ଶବ୍ଦ ସୃଷ୍ଟି ହୁଏ) । ପୁଲିସ ଲ୍ୟାଣ୍ଡମାଇନ ବା ବୋମା ବ୍ୟବହାର କରିଥିବାର କେତେକ ଅଭିଯୋଗ କରନ୍ତି, ଆମ ଦୃଷ୍ଟିରୁ ଏହା ବିଶ୍ୱାସ ଯୋଗ୍ୟ ନୁହେଁ । ଷ୍ଟନ୍ ସେଲ ସହ, ଲୁହବୁହା ବାଷ୍ପ , ରବର ବୁଲେଟ ଆଦି ପୁଲିସ ପ୍ରୟୋଗ କରିଥିଲା । ପୁଲିସ ଏ ସବୁ ଏତେ ଜଲଦି ଜଲଦି ବ୍ୟବହାର କରିଗଲା ସତେ ଯେମିତି ଔପଚାରିକତା ସାରିବାର ଅଛି । (ଆନ୍ଦୋଳନକାରୀଙ୍କ ମତରେ, ସେମାନେ ଉପସ୍ଥିତ ଅଧିକାରୀମାନଙ୍କ ସହ କଥାବାର୍ତ୍ତା କରିବାକୁ ଚାହୁଁଥିଲେ, ଯାହାର ସୁଯୋଗ ସେମାନଙ୍କୁ ଦିଆଗଲା ନାହିଁ ) । ପରିଣାମତଃ, ଏକ ଗଣ୍ଡଗୋଳିଆ ପରିସ୍ଥିତି ଉପୁଜିଲା; ଲୋକ ଭୟ ଓ ରାଗରେ ଏଣେ ତେଣେ ଦୌଡିବାକୁ ଆରମ୍ଭ କଲେ । କେତେକ ପୁଲିସ ଆନ୍ଦୋଳନକାରୀଙ୍କୁ ଗୋଡାଉଥିବା ଅବସ୍ଥାରେ ତଳେ ପଡିଗଲେ (ଆବଡା ଖାବଡା ଜମି ହେତୁ)। ପୁଲିସର ଏ ଅବସ୍ଥା ଲୋକଙ୍କୁ ଫେରିବା ପାଇଁ ଉତ୍ସାହିତ କଲା । (ସବଳ ପ୍ରଶାସନ ବିରୁଦ୍ଧରେ ଦୁର୍ବଳର ପ୍ରତିରୋଧକୁ ଯିଏ ବି କେହି ଅନୁଧ୍ୟାନ କରିଛି, ଏ ପ୍ରକାର ଉତ୍ତେଜନାର ଗତିଶୀଳତା ଓ ମନସ୍ତତ୍ତ୍ୱକୁ ବୁଝିପାରିବ) । ପୁଲିସ ନିଜର ସହକର୍ମୀମାନଙ୍କୁ ପଡିଯିବାର ଦେଖି, ସୁରକ୍ଷା ଦେବା ଆଳରେ ଗୁଳି ଚଳେଇବା ଆରମ୍ଭ କଲା । କିନ୍ତୁ, ଯାହା ଜଣାପଡୁଛି ପୁଲିସ ଗୁଳିକଲା କେବଳ ଲୋକଙ୍କୁ ମାରିବା ପାଇଁ । କେତେକ ଆନ୍ଦୋଳନକାରୀ ପୁଲିସ ଗୁଳିରେ ସେଇଠି ଟଳି ପଡିଲେ । ଏ ପ୍ରକାର ଉତ୍ତେଜନା ସମୟରେ, ଗୋପବନ୍ଧୁ ମହାନ୍ତି ନାମକ ଏକ ନିରସ୍ତ୍ର ହାବିଲଦାର ପଳଉଥିବା ଆଦିବାସୀଙ୍କ ହାତରେ ପଡିଗଲେ । ବିଶୃଙ୍ଖଳ ଜନତା ତାଙ୍କର ପ୍ରାଣ ନେଲେ । ଏହାପରେ ପୁଲିସ ଉନ୍ମତ୍ତ ହୋଇ ଗୁଳି ଚଳେଇଲା । ସେମାନଙ୍କୁ ବାରଣ କରିବା ପାଇଁ ଉପସ୍ଥିତ ଉପରିସ୍ଥ ଅଧିକାରୀ କୌଣସି ପଦକ୍ଷେପ ନେଲେ ନାହିଁ । ଜଣେ ସହକର୍ମୀର ମୃତ୍ୟୁକୁ ବାହାନା କରି, ପୁଲିସ ପ୍ରତିଶୋଧ ପରାୟଣ ଓ ରକ୍ତ ପିପାସୁ ହୋଇଗଲା । ଡରରେ ବୁଦ୍ଧି ହରା ହୋଇ ଲୋକେ ଦୌଡିବା ଆରମ୍ଭ କଲେ । ବିନା ବାଧାରେ, ପୁଲିସ ଲୋକଙ୍କୁ ପଛପଟରୁ ଗୁଳି କରିଚାଲିଲା । ମହିଳା ଓ ପିଲା ବି ବାଦ ପଡିଲେ ନାହିଁ । ମୃତ ଓ ଆହତ ଶରୀର ଭୂଇଁରେ ଖେଳେଇ ହୋଇ ପଡିଲା । କେତେକ ନିହତ ଓ ଆହତମାନଙ୍କୁ ଲୋକେ ଗାଁକୁ ବୋହିନେଲେ । ଆହତମାନଙ୍କୁ ଡାକ୍ତରଖାନାରେ ଭର୍ତ୍ତି କଲେ । ଆଉ କେତେ ଆହତ ଓ ନିହତଙ୍କୁ ପୁଲିସ ଡାକ୍ତରଖାନାକୁ ନେଇଗଲା । ଶେଷ ଗଣତିର (ଯାହା ଧିରେ ଧିରେ ଯାହା ଜଣାପଡିଲା) ସମୀକରଣ ଥିଲା ସ୍ତବ୍ଧ କଲାଭଳି -

ଜଣେ ପୁଲିସ ମୃତ ଓ ଘରିଜଣ ଆହତ : ୧୨ ଜଣ ଆଦିବାସୀ ମୃତ ଓ ୩୭ ଜଣ ଆହତ ।

ପି.ୟୁ.ସି.ଏଲ. ଦଳ ପୁଲିସ ସମେତ ଅନ୍ୟ ଆହତ ବ୍ୟକ୍ତିମାନଙ୍କୁ କଟକ ବଡ ଡାକ୍ତରଖାନାରେ ଭେଟିଥିଲେ । ଆହତ ପୁଲିସମାନେ ହେଲେ ଆର.ଆର.ନରପାଣି , ଶ୍ରୀ ବି.ଏସ୍. ଗେରଙ୍ଗ, ଶ୍ରୀ ଆସବାହାଦୂର ଗମ ଏବଂ ଶ୍ରୀ ଏଚ.ବି.ନେଓ୍ୱାର । ପୁଲିସମାନଙ୍କ ଶରୀରରେ ଲାଠି ଦ୍ୱାରା କ୍ଷତ ଚିହ୍ନ ଥିଲା । ତୀର ଦ୍ୱାରା ଆହତ ଥିବାର ଚିହ୍ନ ନଥିଲା ।

## ଗୁଳିକାଣ୍ଡର ପରବର୍ତ୍ତୀ ଘଟଣାବଳୀ

ଲୋକେ ତାଙ୍କ ପାଖରେ ରହିଯାଇଥିବା ୪ଟିମୃତ ଦେହକୁ ଧରି ଜନମଞ୍ଚର ନେତୃତ୍ୱରେ ଜାତୀୟ ରାଜପଥ ୨୦୦ର ମଧୁବନ ଛକ ଠାରେ ଧାରଣାରେ ବସି ରହିଲେ । ମର୍ମାନ୍ତିକ ଆଘାତ ଓ ଦୁଃଖ କ୍ରମଶଃ ଭୟଙ୍କର କ୍ରୋଧରେ ପରିଣତ ହେଲା ଏବଂ ସରକାରଙ୍କର ସମସ୍ତ ଅପଯୋଜନାକୁ ପଣ୍ଡ କରିବାର ସଂକଳ୍ପ ନେଇ ଜାତୀୟ ରାଜପଥ ଅବରୋଧ କଲେ (ରିର୍ପୋଟ ଲେଖା ହେବା ପର୍ଯ୍ୟନ୍ତ ରାସ୍ତା ଅବରୋଧ ଜାରୀ ରହିଛି) । ଏଥି ସହ ସରକାରଙ୍କ ନିକଟରେ ୭ ଦଫା ଦାବି ଉପସ୍ଥାପିତ କଲେ । ଅନ୍ୟ ମୃତଦେହଗୁଡିକ ପରିବାର ବର୍ଗକୁ ହସ୍ତାନ୍ତର ହେବା ପରେ ଜାନୁୟାରୀ ୪ ତାରିଖରେ ଆମ୍ବ ଗଡିଆଠାରେ ଗଣଦାହ ଅନୁଷ୍ଠିତ ହେଲା (ଗଣଦାହ ସ୍ଥଳୀ ଏବେ ବୀରଭୂମି ନାଁରେ ପରିଚିତ) । ପୁଲିସ ହସ୍ତାନ୍ତର କରିଥିବା ମୃତଦେହ ମଧ୍ୟରୁ ୫ଟିର ପାପୁଲି କଟାଯାଇଥିବାର ଦେଖାଗଲା । ନିଆଁରେ ଘିଅ ଢାଳିଲା ପରି ଲୋକଙ୍କର କ୍ରୋଧ ଆହୁରି ବଢିଲା ।

### ଜନମଞ୍ଚର ସାତଦଫା ଦାବି :

୧. କୌଣସି ଜଣେ ଲୋକ ଶିଳ୍ପ ବା ଅନ୍ୟ ଯେ କୌଣସି ବାହାନାରେ ବିସ୍ଥାପିତ ହେବେ ନାହିଁ । ଏହି ଅଞ୍ଚଳରେ ପୂର୍ବରୁ ବିସ୍ଥାପିତ ହୋଇଥିବା ପ୍ରତ୍ୟେକ ପରିବାରକୁ ପାଞ୍ଚ ଏକର କରି ଚାଷ ଜମି ଦିଆଯାଉ ।

୨. ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ, ଅର୍ଥମନ୍ତ୍ରୀ ପ୍ରଫୁଲ୍ଲ ଘଡେଇ ତଥା ଶିଳ୍ପମନ୍ତ୍ରୀ, ଖଣିମନ୍ତ୍ରୀ ଓ ଆଦିବାସୀ ହରିଜନ ବିକାଶ ମନ୍ତ୍ରୀଙ୍କୁ ମନ୍ତ୍ରୀ ମଣ୍ଡଳରୁ ବହିଷ୍କାର କରାଯାଉ ଏବଂ ନବୀନ ପଟ୍ଟନାୟକ ଓ ପ୍ରଫୁଲ୍ଲ ଘଡେଇଙ୍କ ଉପରେ ୧୨ ଜଣ ଆଦିବାସୀଙ୍କୁ ହତ୍ୟା ଅପରାଧରେ

ମାମଲା ରୁଜୁ କରାଯାଉ ।

୩. ଡିଜିପି ଓ ଗୃହ ସଚିବଙ୍କୁ ବହିଷ୍କାର କରାଯାଉ ଏବଂ ଯାଜପୁର ଏସ୍.ପି., କଲେକ୍ଟର ଓ କଳିଙ୍ଗନଗର ଏ.ଡି.ଏମ୍‌ଙ୍କୁ ଚାକିରୀରୁ ନିଲମ୍ବିତ କରି ୩୦୨ ଦଫାରେ ଗିରଫ କରାଯାଉ ।

୪. ପ୍ରତ୍ୟେକ ମୃତ ବ୍ୟକ୍ତିଙ୍କ ପରିବାରକୁ ୨୦ ଲକ୍ଷ ଟଙ୍କା ଏବଂ ପ୍ରତ୍ୟେକ ଆହତ ବ୍ୟକ୍ତିଙ୍କୁ ୧୦ ଲକ୍ଷ ଟଙ୍କା କ୍ଷତି ପୂରଣ ଦିଆଯାଉ ।

୫. ବହୁଜାତୀୟ କମ୍ପାନୀ ଓ ଏକଚାଟିଆ ଶିଳ୍ପ ଗୋଷ୍ଠୀ ମାନଙ୍କୁ ଓଡିଶା ମାଟିରୁ ବହିଷ୍କାର କରାଯାଉ ।

୬. ଆଦିବାସୀ ଅଞ୍ଚଳରେ ଖଣିଜ ସମ୍ପଦ, ଜମି, ଜଳ, ଜଙ୍ଗଲ ଓ ଶିଳ୍ପ ଇତ୍ୟାଦି ପ୍ରତ୍ୟେକ କ୍ଷେତ୍ର ଉପରେ ବିକାଶର ଅଧିକାର ଆଦିବାସୀଙ୍କୁ ଦିଆଯାଉ ।

୭. ଆନ୍ଦୋଳନକାରୀ ମାନଙ୍କ ଉପରେ ଥିବା ସମସ୍ତ ମାମଲା ପ୍ରତ୍ୟାହାର ଓ ଜେଲରେ ଥିବା ସମସ୍ତ ନେତା ଓ କର୍ମୀଙ୍କୁ ନିଃସର୍ତ୍ତ ଖଲାସ ।

ଆନ୍ଦୋଳନର ନେତୃତ୍ୱ ନେଉଥିବା ସଂଗଠନ - ବିସ୍ଥାପନ ବିରୋଧି ଜନମଞ୍ଚ - ତଥା ମୃତକଙ୍କ ପାଇଁ ବିଭିନ୍ନ କୋଣରୁ ସଂହତି, ସମର୍ଥନ, ସମବେଦନା ଅଜାଡି ହୋଇପଡିଲା । ଜନଚକ୍ଷୁରେ ମୃତକମାନେ ଶହୀଦ ଆସନ ପାଇଲେ । ଗୁଳିକାଣ୍ଡ ଘଟଣା ଦେଶ ବିଦେଶରେ ରଟିଗଲା । ଗୁଳିକାଣ୍ଡ ପରେ ସରକାର ଦ୍ୱାରା ଘୋଷିତ ଅନୁଗ୍ରହ ରାଶି ଜନମଞ୍ଚ ସିଧାସଳଖ ପ୍ରତ୍ୟାଖାନ କଲେ । ସବୁଠୁଁ ଉଲ୍ଲେଖ ଯୋଗ୍ୟ ବିଷୟ ଆଜି ପର୍ଯ୍ୟନ୍ତ ରାଜ୍ୟ ସରକାରଙ୍କ କେହି ମନ୍ତ୍ରୀ ସେ ଅଞ୍ଚଳକୁ ବା ଲୋକମାନଙ୍କୁ ଭେଟି ଯାଇନାହାନ୍ତି । ଗୁଳିକାଣ୍ଡ ଘଟଣାକୁ ନେଇ ପୁଲିସ ଆନ୍ଦୋଳନକାରୀଙ୍କ ବିରୁଦ୍ଧରେ ମାମଲା ରୁଜୁ କରିଛି କିନ୍ତୁ , ପୁଲିସ ବିରୁଦ୍ଧରେ କୌଣସି ମକଦ୍ଦମା ହୋଇନାହିଁ ।

କଳିଙ୍ଗନଗର ଗୁଳିକାଣ୍ଡ ଘଟଣାର ପରେ ପରେ ବିସ୍ଥାପନ ସମସ୍ୟା ଓ ଥଇଥାନ ଦାବୀ ନେଇ ପ୍ରକଳ୍ପ କ୍ଷତିଗ୍ରସ୍ତ ଜନସାଧାରଣ ଓଡିଶାର ବିଭିନ୍ନ ସ୍ଥାନରେ ପ୍ରତିବାଦ କରିଛନ୍ତି ।

## ପି.ୟୁ.ସି.ଏଲ୍.ର ମତାମତ

୧. ୧୯୨୮ ପରେ ସେ ଅଞ୍ଚଳରେ କୌଣସି ଭୂ-ବନ୍ଦୋବସ୍ତ ହୋଇ ନାହିଁ ଏବଂ ଏହା ଏକ ତ୍ରୁଟିବୋଲି ସରକାର ସ୍ୱୀକାର କରିଛନ୍ତି । ୧୯୫୧ରେ ଇଷ୍ଟେଟ ଉଚ୍ଛେଦ ଆଇନ୍ ପାଶ ହେବା ସମୟରେ, ଲୋକମାନଙ୍କ ଦଖଲରେ ଥିବା ଜମି ଉପରେ ସେମାନଙ୍କୁ ରୟତି ଅଧିକାର ନ ଦେଇ ସରକାର ସେମାନଙ୍କୁ ଜମି ଜୀବିକାର ନ୍ୟାୟିକ ଅଧିକାରରୁ ବଂଚିତ କରିଛନ୍ତି । ଫଳତଃ, ଶିଳ୍ପିକରଣ ହେତୁ ଯେତେବେଳେ ବିସ୍ଥାପନ ଦେଖାଦେଇଛି କ୍ଷତିପୂରଣ ପାଇବାର ଅଧିକାରରୁ ସେମାନଙ୍କୁ ବଂଚିତ କରାଯାଇଛି (କ୍ଷତିପୂରଣ କେତେ ଅନ୍ୟାୟୋଚିତ ତାହା ଭିନ୍ନ ବିଷୟ) । ଅର୍ଥାତ୍, ସମାଜର ଏକ ବଂଚିତ ସମୁଦାୟକୁ ନିଜ ଜମି ଉପରେ ନ୍ୟାଯ୍ୟ ଅଧିକାର ଦେବା କ୍ଷେତ୍ରରେ ସରକାର ଜାଣିଶୁଣି ଅବହେଳା କରିଛନ୍ତି । ଏହି ତ୍ରୁଟି ପାଇଁ ସରକାର ହିଁ ଦାୟୀ । ପି.ୟୁ.ସି.ଏଲ୍.ର ଅନୁଭବ ଯେ ସମୟୋଚିତ ଭୂ-ବନ୍ଦୋବସ୍ତ ହୋଇଥିଲେ, ଏପରି ଗୁରୁତର ଦୁଃଖଦ ପରିସ୍ଥିତିକୁ ଏଡେଇ ଦିଆଯାଇ ପାରିଥାନ୍ତା ।

୨. ଏକ ଘରୋଇ କମ୍ପାନୀର ସାମାନ୍ୟ ଜମି ସମତଳ କାମ ପାଇଁ ଏତେ ସଂଖ୍ୟକ ପୁଲିସ ମୂତୟନ କେବଳ ଅନାବଶ୍ୟକ ନୁହଁ, ବରଂ ସରକାରଙ୍କର ସ୍ଥାନୀୟ ବାସିନ୍ଦା, ମୁଖ୍ୟତଃ ଆଦିବାସୀମାନଙ୍କ ପ୍ରତି ଥିବା ଗଭୀର ବିଦ୍ୱେଷର ପରିଚାୟକ । ଯେତେବେଳେ କମ୍ପାନୀ ଓ ସରକାର ବିରୁଦ୍ଧରେ ଅସନ୍ତୋଷ ବଢୁଥିଲା ଓ ସଂଗଠିତ ରୂପ ନେଉଥିଲା, ସରକାର ଲୋକମାନଙ୍କର ଦାବି ପ୍ରତି ନଜର ଦେବା ପରିବର୍ତ୍ତେ, ଏତେ ସଂଖ୍ୟକ ପୁଲିସ ମୂତୟନ କରି ପରିସ୍ଥିତିକୁ ଆହୁରି ଗୁରୁତର କରିଦେଲେ । ପି.ୟୁ.ସି.ଏଲ୍. ବିଶ୍ୱାସ କରେ ଯେ ଜିଲ୍ଲା ପ୍ରଶାସନ ଟାଟା କମ୍ପାନୀର ଘରୋଇ ସେନା ଭଳି ବ୍ୟବହାର କଲା ଏବଂ ଏହି ବ୍ୟବହାର ଉତ୍ତେଜନା ଉଦ୍ରେକକାରୀ ଥିଲା ।

୩. ଲୋକମାନଙ୍କର ଆଶଙ୍କାକୁ ଦୂରିଭୂତ କରିବା ପାଇଁ ସରକାରଙ୍କର ନିକଟରେ ଅନେକ ସୁଯୋଗ ଥିଲା । ସରକାର ଆପୋଷ ଆଲୋଚନା ମାଧ୍ୟମରେ ସମସ୍ୟାର ସମାଧାନ ନକରି, ଲୋକଙ୍କର ନ୍ୟାଯ୍ୟ ଦାବିକୁ ଆଇନ ଶୃଙ୍ଖଳାର ପ୍ରଶ୍ନ ଭାବେ ଦେଖିଲେ । ବିବାଦର ଆରମ୍ଭରୁ, ନିଜର ପାରମ୍ପରିକ ଜୀବିକାକୁ ବଞ୍ଚେଇ ରଖିବାକୁ ଚାହୁଁଥିବା ନିରୀହ ଆଦିବାସୀମାନଙ୍କୁ ସରକାର ବିକାଶ ବିରୋଧି ତଥା ଶତ୍ରୁ ବୋଲି ଭାବିଲେ । ବିକାଶର ପରିଭାଷାକୁ ପ୍ରଶ୍ନ କରୁଥିବା କୌଣସି ତୃଣମୂଳ ଆନ୍ଦୋଳନ ପ୍ରତି ସରକାରଙ୍କ ବିଦ୍ୱେଷ ଓ ଯଥେଚ୍ଛାଚାରର ସାମାଜିକ ଉତ୍ତେଜନାର ମୂଳ କାରଣ ବୋଲି ପି.ୟୁସି.ଏଲ୍. ବିଶ୍ୱାସ କରେ ।

୪. ଜାନୁୟାରୀ ୨ ତାରିଖର ଘଟଣାଟିକୁ ଯୋଉଭଳି ପରିଚାଳନା କରାଗଲା ସେଥିରୁ ଜଣାପଡେ ଯେ ଆନ୍ଦୋଳନକାରୀମାନଙ୍କୁ ଉଚିତ୍ ଶିକ୍ଷା ଦେବା ଲାଗି ସରକାର ଆଇନ ଶୃଙ୍ଖଳାର ପ୍ରଶ୍ନକୁ ଏକ ବାହାନା ଭାବେ ବ୍ୟବହାର କଲେ । ଲୋକେ ସେମାନଙ୍କର ସାମୁହିକ ଇଚ୍ଛା ବଳରେ, କମ୍ପାନୀ / ସରକାରଙ୍କର କେତେକ କାର୍ଯ୍ୟକ୍ରମକୁ ଆଗରୁ ଭଣ୍ଡୁର କରି ଦେବାକୁ ସକ୍ଷମ ହୋଇଥିଲେ । ତେଣୁ ଲୋକମାନଙ୍କ ମନୋବଳକୁ ଧ୍ୱଂସ କରିବା ଲାଗି ପ୍ରଶାସନ ଏକ ଦୃଷ୍ଟାନ୍ତମୂଳକ ଦଣ୍ଡଦେବାକୁ ଚାହୁଁଥିଲା, ଯେମିତିକି ସବୁଦିନ ପାଇଁ ସେମାନଙ୍କର ପ୍ରତିବାଦୀ ସ୍ୱର ଚାପିହୋଇଯାଏ । ମହିଳା ଓ ପିଲା ଯେ ପୁଲିସ ଗୁଳିରୁ ବାଦ ପଡିନାହାଁନ୍ତି ତଥା ଲୋକ ଦୌଡି ପଳେଇଯାଉଥିବା ଅବସ୍ଥାରେ ସେମାନଙ୍କୁ ପଛରୁ ଗୁଳିକରାଯାଇଛି, ସେଥିରୁ ଯଥେଷ୍ଟ ସୂଚନା ମିଳେ ଯେ ପାନେ ଚଖେଇବା ଥିଲା ପୁଲିସର ଅସଲ ଉଦ୍ଦେଶ୍ୟ ।

୫. ପ୍ରଥମ ଅବସ୍ଥାରେ ଲୋକେ କଳିଙ୍ଗନଗର ଶିଳ୍ପାଞ୍ଚଳକୁ ସ୍ୱାଗତ କରିଥିଲେ । ଆଶା ଓ ବିଶ୍ୱାସ ଥିଲା ଯେ ଏହାଦ୍ୱାରା ସେମାନଙ୍କର ଆର୍ଥିକ ଓ ସାମାଜିକ ସ୍ଥିତିରେ ଉନ୍ନତି ଆସିବ । କ୍ରମଶଃ ଆଶା ନିରାଶାରେ ପରିଣତ ହୋଇଛି ଏବଂ ନିଜର ତଥା ଆଗାମୀ ପିଢ଼ିର ଭବିଷ୍ୟତର ଅସୁରକ୍ଷା ବହୁଗୁଣରେ ବଢିଛି । ଏକ ଶାନ୍ତିପ୍ରିୟ ଓ ଆଇନ ପାଳନକାରୀ ଜନ ସମୁଦାୟକୁ ପ୍ରତାରିତ କରାଯାଇଛି ଏବଂ ସରକାରଙ୍କୁ ଧନ୍ୟ କହିବା ଯେ ସ୍ଥାନୀୟ ବାସିନ୍ଦା ଆଜି ତିକ୍ତ ପାଲଟିଯାଇଛନ୍ତି । ପି.ୟୁ.ସି.ଏଲ୍ ବିଶ୍ୱାସ କରେ ଯେ ସେମାନଙ୍କର ଆଶା ଓ ଆକାଂକ୍ଷା, ଏବଂ ସେହି ଦୃଷ୍ଟିରୁ, ସେମାନଙ୍କର ଦାବି ଯଥାର୍ଥ ଓ ନ୍ୟାୟୋଚିତ । ସରକାରଙ୍କର ସେମାନଙ୍କ ପ୍ରତି ତିକ୍ତତା ବିଷୟରେ ତାହା କୁହାଯାଇ ନପାରେ ।

୬. ଆଦିବାସୀମାନେ ଏହି ଯାଗାରେ ପ୍ରାୟ ୧୦୦ ବର୍ଷହେଲା ରହି ଆସୁଛନ୍ତି । ଏବେ ଶାସକ ଦଳର କେତେକ ନେତା ତଥା ଅନ୍ୟ ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀ ସେମାନେ ବାହାର ଲୋକ ବୋଲି ଅପପ୍ରଚାର ଚଳେଇଛନ୍ତି । (ଗୁଳିକାଣ୍ଡରେ ମରିଥିବା ଲୋକମାନଙ୍କୁ ଭୁବନେଶ୍ୱର ଲୋକସଭା ସଦସ୍ୟ 'ଝାଡଖଣ୍ଡ ଗୁଣ୍ଡା' ବୋଲି କହିଛନ୍ତି) ଏହା କଟା ଘା'ରେ ଚୂନ ଦେବା ଭଳି । ସରକାରଙ୍କର ଅସମତୁଲ ବିକାଶର ବଳି, ସ୍ଥାନୀୟ ଆଦିବାସୀ ସମୁଦାୟ, ଏବଂ ରାଜ୍ୟର ସାଧାରଣ ଜନତାଙ୍କ ମଧ୍ୟରେ ଫାଟ ସୃଷ୍ଟି କରିବା ଲାଗି ଏହା ଏକ ଜଘନ୍ୟ ପ୍ରୟାସ । ସରକାର ଏ ପ୍ରକାର ଅପପ୍ରଚାର ଲାଗି ସିଧାସଳଖ ଦାୟୀ ବୋଲି ପି.ୟୁ.ସି.ଏଲ୍ ର ମତ । ପି.ୟୁ.ସି.ଏଲ୍ ଲୋକମାନଙ୍କୁ ଆବେଦନ କରେ ଯେ ଏ ପ୍ରକାର ଅପପ୍ରଚାରର ଶିକାର ନ ହୁଅନ୍ତୁ, ଯାହାର ଅସଲ ଉଦ୍ଦେଶ୍ୟ ବାସ୍ତବ ସମସ୍ୟାଠାରୁ ଧ୍ୟାନ ଏଡେଇ ଦେବା । ରାଜ୍ୟବାସୀ ଏ କଥା ବିଚାର କରନ୍ତୁ ଯେ ଟାଟା, ବିରଳା, ଜିନ୍ଦଲ, ବେଦାନ୍ତ ଏବଂ ପୋସ୍କୋ ଭଳି ସଂସ୍ଥା

- ଯେଉଁ ମାନେ କେବଳ ଲାଭ କରିବା ଆଶାରେ ରାଜ୍ୟକୁ ଆସିଛନ୍ତି- ସେମାନେ ରାଜ୍ୟର 'ଭିତର ଲୋକ' ହୋଇ ପାରିଲେ; ଅଥଚ ଯେଉଁ ଆଦିବାସୀ ଲୋକ ଏ ମାଟିରେ ଶତାଧିକ ବର୍ଷଧରି ବସବାସ କରୁଛନ୍ତି ଏବଂ ମାଟିକୁ ହଳ କରିହିଁ ଜୀବନ ଧାରଣ କରନ୍ତି ସେମାନେ 'ବାହାର ଲୋକ' ହୋଇଗଲେ ? ରାଜ୍ୟର ମୁଖ୍ୟମନ୍ତ୍ରୀ, ଯିଏ ରାଜ୍ୟର ଭାଷା କହିପାରନ୍ତି ନାହିଁ, ସେ କେମିତି ରାଜ୍ୟର 'ଭିତର ଲୋକ' ହୋଇଗଲେ ?

୭. ଘରୋଇ କମ୍ପାନୀର ସ୍ୱାର୍ଥଲାଗି ସରକାର କରିଥିବା ଅପରାଧରୁ ଧ୍ୟାନ ହଟେଇବାଲାଗି 'ପ୍ରଥମେ କିଏ ଆକ୍ରମଣ କଲା' ପ୍ରଶ୍ନଟି ଆଉ ଏକ ଚାଲାକି । ଗୋଟିଏ ପଟେ, ମହିଳା, ପିଲା, ସମେତ ଏକ ଅପ୍ରସ୍ତୁତ ଜନଗହଳି (ଯେଉଁମାନଙ୍କ ହାତରେ ପୁଲିସ ଭଳି ଗୋଳା ବଂଧୁକ ନଥିଲା), ଅନ୍ୟ ପଟେ ୧୦ ପ୍ଲାଟୁନ ପ୍ରଶିକ୍ଷିତ ପୁଲିସ । ଏ ପ୍ରକାର ସ୍ଥିତିରେ ଲୋକେ ଯେ ପ୍ରଥମେ ଆକ୍ରମଣ କରିବାକୁ ସାହସ କରିବେ, ବିଶ୍ୱାସ କରିବା କଷ୍ଟକର । ଆଦିବାସୀ ମାନେ ଧନୁତୀର ଧରିଥିବା କଥାଟିକୁ ଯେମିତି ବଡ କରିକୁହାଯାଉଛି, ବାସ୍ତବ ପ୍ରମାଣ ଆଗରେ ତାହା ଫୁସ୍ ହୋଇଯାଏ । କାରଣ ଜଣେ ବି ପୁଲିସ ତୀର ଦ୍ୱାରା ଆଘାତ ପ୍ରାପ୍ତ ହୋଇନାହିଁ । ଯଦି ବି ଧରିନିଆଯାଏ, ଲୋକେ ପ୍ରଥମେ ଆକ୍ରମଣ କଲେ, ତେବେ କଣ ପୁଲିସକୁ ଲାଇସେନ୍ସ ମିଳିଗଲା ଲୋକଙ୍କୁ ମାରିବାକୁ, ମନଇଛା ଗୁଳି ଚଳେଇବାକୁ ? ପୁଲିସର ନିର୍ଦ୍ଦୟ ହତ୍ୟାକାଣ୍ଡକୁ ଯଥାର୍ଥ ସାବ୍ୟସ୍ତ କରିବା ଉଦ୍ଦେଶ୍ୟରେ ଆଦିବାସୀମାନେ ପ୍ରଥମେ ଆକ୍ରମଣ କରିଥିବାର ଆରୋପ କରାଯାଉଛି ଏବଂ ପୁଲିସ ଆତ୍ମରକ୍ଷା ପାଇଁ ଗୁଳି ଚଳେଇଲା ବୋଲି କୁହାଯାଇଛି । ପି.ୟୁ.ସି.ଏଲ୍. ବିଶ୍ୱାସକରେ, ଘଟଣା ପରେ ଯୋଡାଯୋଡି କରି ଏପରି କାହାଣୀ ତିଆରି କରାଯାଇଛି ।

୮. ପାପୁଲି କାଟିବା ଘଟଣାଟି ଯେତିକି ଦୁଃଖଦ ସେତିକି ଗମ୍ଭୀର । ଏହା ସରକାର ସ୍ୱୀକାର କରିଛନ୍ତି ଓ ଏଥିପାଇଁ ୩ ଜଣ ଡାକ୍ତରଙ୍କୁ ଚାକିରୀରୁ ନିଲମ୍ବିତ କରାଯାଇଛି । ଆଦିବାସୀମାନଙ୍କ ପ୍ରତି ଘୃଣାଭାବର କଣ ଇଏ ଏକ ପ୍ରତିଫଳନ ? ମୃତ ଶରୀରକୁ କ୍ଷତ ବିକ୍ଷତ କରିବା ଅଭିଯୋଗକୁ ଜାତୀୟ ମାନବ ଅଧିକାର ଆୟୋଗ ଅନୁସନ୍ଧାନ କରୁ ବୋଲି ପି.ୟୁ.ସି.ଏଲ୍ ଦାବି କରେ ।

୯. ଚିରାଚରିତ ଢଙ୍ଗରେ ସରକାର ଘଟଣାର ନ୍ୟାୟିକ ଯାଞ୍ଚ ଆଦେଶ ଦେଇଛନ୍ତି । ପୁଲିସର ମାତ୍ରାଧିକ କାର୍ଯ୍ୟ, ବା ଗୁଳିକାଣ୍ଡପରେ ଜନରୋଷକୁ ଶାନ୍ତ କରିବା ପାଇଁ ନ୍ୟାୟିକ ଯାଞ୍ଚ ଆଦେଶ ଏକ ସରକାରୀ ତାମସା ବୋଲି ତଥ୍ୟାଭିଜ୍ଞ ମହଲରେ କୁହାଯାଉଛି । ବହୁ

ନ୍ୟାୟିକ ଯାଞ୍ଚର ରିର୍ପୋଟ ବର୍ତ୍ତମାନ ସୁଦ୍ଧା ବିଧାନ ସଭାରେ ଉପସ୍ଥାପନ କରାଯାଇନାହିଁ । ଦୋଷୀ ସରକାରୀ କର୍ମକର୍ତ୍ତାଙ୍କୁ ଦଣ୍ଡ ଦେବା ତ ଦୂରର କଥା, ସରକାର ଯେ ଏ ବିଷୟରେ ଖାମଖିଆଲି ଏଥିରୁ ସ୍ପଷ୍ଟ । ପିୟୁସିଏଲ୍ ବିଶ୍ୱାସ କରେ ଯେ ଏପରି ଭାବେ ନ୍ୟାୟିକ ଯାଞ୍ଚ କରେଇବାର ଶେଷ ପରିଣାମ ଓଲଟା ହିଁ ହେବ । ତା ଉପରେ ଲୋକଙ୍କର ବିଶ୍ୱାସ ତୁଟି ଯିବ । ଜନରୋଷକୁ ପ୍ରଶମିତ କରିବାକୁ ବି ଏହା ସମର୍ଥ ହେବ ନାହିଁ । ପିୟୁସିଏଲ୍ ଦୃଷ୍ଟିରେ ଖାମ ଖିଆଲି ନ୍ୟାୟିକ ଯାଞ୍ଚ ଆଦେଶ ଲୋକଙ୍କୁ ଭୂତେଇବା ଲାଗି ସରକାରଙ୍କ ଏକ ଛଳ ।

୧୦. କଳିଙ୍ଗନଗର ବା ଅନ୍ୟ ଅଞ୍ଚଳରେ ଲାଗି ରହିଥିବା ଜନ ଅସନ୍ତୋଷ ପାଇଁ ନକ୍ସଲ୍ ବା ଏନଜିଓ ମାନଙ୍କୁ ଦାୟୀ କରିବାର ପ୍ରଚେଷ୍ଟା ସରକାର ତଥା ଗଣମାଧ୍ୟମର କେତେକ ଗୋଷ୍ଠୀଦ୍ୱାରା କରାଯାଉଛି । ପିୟୁସିଏଲ୍ ବିଶ୍ୱାସ କରେ ଯେ ମୂଳ ସମସ୍ୟା ଠାରୁ ଲୋକମାନଙ୍କର ଧ୍ୟାନ ହଟେଇବା ଲାଗି ଏହା ଏକ ଛଳ । ପିୟୁସିଏଲ୍ ଆହୁରି ମଧ୍ୟ ବିଶ୍ୱାସ କରେ ଯେ ନକ୍ସଲ୍, ଏନଜିଓ ବା ଯେ କୌଣସି ଆଦର୍ଶରେ ବିଶ୍ୱାସୀ ସଂସ୍ଥା / ସଂଗଠନ / ଗୋଷ୍ଠୀ / ବ୍ୟକ୍ତିର ଲୋକମାନଙ୍କ ସହ ରହିବାର ଅଧିକାର ଅଛି ଏବଂ ସେମାନଙ୍କୁ ଗ୍ରହଣ କରିବେ ବା ପ୍ରତ୍ୟାଖ୍ୟାନ କରିବେ ତାହା ଲୋକମାନେ ନିଷ୍ପତ୍ତି ନେବେ ।

୧୧. ଓଡିଶାର ଖଣିଜ ସଂପଦକୁ ବ୍ୟବହାର କରି, ସରକାର ଓଡିଶାକୁ ଏକ ଶିଳ୍ପ ସମୃଦ୍ଧ ରାଜ୍ୟରେ ପରିଣତ କରିବାକୁ ସଂକଳ୍ପବଦ୍ଧ । ଗୋଟିଏ ପଟେ, ରାଜ୍ୟର ଅନୁନ୍ନତ ଅବସ୍ଥା, ବ୍ୟାପକ ଦାରିଦ୍ର୍ୟ ଓ ବେକାରୀ ଲାଗି ଶିଳ୍ପିକରଣକୁ ମହୌଷଧି ବୋଲି ଦେଖାଯାଉଛି । ଅନ୍ୟ ପଟେ, ଶିଳ୍ପିକରଣ ହେତୁ ବହୁତ ସଂଖ୍ୟକ ଜନ ସମୁଦାୟ, ବିଶେଷ କରି, ସାମାଜିକ ଓ ଅର୍ଥନୈତିକ ଦୃଷ୍ଟିରୁ ଅବହେଳିତ ଗୋଷ୍ଠୀର ଜୀବନ ଜୀବିକା କ୍ଷତିଗ୍ରସ୍ତ ହେଉଛି । ପରିବେଶରେ ଅପୂରଣୀୟ କ୍ଷତିହେଉଛି । ସରକାର ଲୋକଙ୍କୁ ବିଶ୍ୱାସକୁ ନନେଇ, ସେମାନଙ୍କ ସହ ଆଲୋଚନା ଓ ବୁଝାମଣାର ରାସ୍ତା ବାହାର ନକରି, ବଳପୂର୍ବକ ଶିଳ୍ପିକରଣ କରିବାକୁ ଚେଷ୍ଟା କରୁଛନ୍ତି । ଉଦାହରଣ ସ୍ୱରୂପ, ଏବେ ସରକାର ବାରିପଦା ଠାରେ ମୃତୟନ ଥିବା ଓଡିଶା ରାଜ୍ୟ ସଶସ୍ତ୍ର ବାହିନୀର ୫ମ ବାଟାଲିୟନ୍‌କୁ କଳିଙ୍ଗନଗର ସ୍ଥାନାନ୍ତରିତ କରିବାଲାଗି ନିଷ୍ପତ୍ତି ନେଇଥିବାର ଜଣାଯାଏ *(ସମ୍ବାଦ - ୧୯.୨.୬)* । ପି.ୟୁ.ସି.ଏଲ. ବିଶ୍ୱାସ କରେ ଯେ ଶିଳ୍ପିକରଣ ନାଁରେ ଯାହା ଚାଲିଛି ସେ ବିଷୟରେ କେବଳ ପ୍ରକଳ୍ପ କ୍ଷତିଗ୍ରସ୍ତ ଜନସାଧାରଣ ନୁହେଁ, ସମସ୍ତ ରାଜ୍ୟବାସୀଙ୍କର ଜାଣିବାର ଅଧିକାର ରହିଛି - ଶିଳ୍ପିକରଣ ହେତୁ କାହାର କି ପ୍ରକାର ବିକାଶ ହେଉଛି, କିଏ କେତେ ଲାଭ ପାଉଛି ଏବଂ କିଏ କେତେ କ୍ଷତି ସହୁଛି ।

୧୨. ଗଭୀର ଉଦ୍‌ବେଗର ବିଷୟ ଯେ ବିସ୍ଥାପିତ ପରିବାରମାନଙ୍କ ଦୁର୍ଦ୍ଦଶା ଓ ବିସ୍ଥାପନ ସମସ୍ୟା ଦିନକୁ ଦିନ ବଢିଚାଲିଥିବା ବେଳେ, ସରକାର ପରେ ସରକାର ଥଇଥାନ ଓ ପୁନର୍ବାସ ନୀତିର ଆବଶ୍ୟକତାକୁ ନଜର ଅନ୍ଦାଜ କରି ଚାଲିଛନ୍ତି । ବିସ୍ଥାପନ ବିରୁଦ୍ଧରେ ଲୋକମାନଙ୍କର ପ୍ରତିବାଦ ଓ ପ୍ରତିରୋଧକୁ ଆଇନ ଶୃଙ୍ଖଳାର ବିଷୟ ବୋଲି ବିବେଚନା କରି ତା ଉପରେ ଭୟଙ୍କର ଦମନ କରାଯାଉଛି । କଳିଙ୍ଗନଗର କ୍ଷେତ୍ରରେ ଥଇଥାନ ନିର୍ଦ୍ଦେଶନାମାକୁ ସବୁଦିଗରୁ ଗୁରୁତର ଭାବେ ଉଲ୍ଲଂଘନ କରାଯାଇଛି । ପୁନର୍ବାସ କଲୋନୀର ସ୍ଥିତି ସରକାରୀ ପ୍ରତିଶ୍ରୁତି ତୁଳନାରେ ଯଥେଷ୍ଟ ନିମ୍ନମାନର । ପୁନର୍ବାସ ମାମଲାରେ ଲୋକମାନଙ୍କୁ ବିଶ୍ୱାସକୁ ନିଆଯାଇନାହିଁ । ପ୍ରତିନିଧିତ୍ୱ ପାଇଁ ଲୋକେ ଦାବି କରିଥିବା ସତ୍ତ୍ୱେ, ପୁନର୍ବାସ ଉପଦେଷ୍ଟା କମିଟିରେ କୌଣସି ଲୋକ ପ୍ରତିନିଧି ନିଆଯାଇ ନାହିଁ ।

## ଶେଷରେ ...

ନୂଆ ଆର୍ଥିକ ନୀତି ପ୍ରଚଳନ ହେବାପରଠାରୁ ରାଜ୍ୟରେ ଖଣି-ଭିତ୍ତିକ ଶିଳ୍ପ ପ୍ରତିଷ୍ଠା ପାଇଁ ଓଡିଶା ସରକାର ଦେଶୀୟ ଓ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ବ୍ୟଗ୍ରତାର ସହିତ ଆମନ୍ତ୍ରଣ କରୁଛନ୍ତି । ଉଦ୍ଦେଶ୍ୟ - ଓଡିଶାର ଜନସାଧାରଣଙ୍କ ଆର୍ଥିକ ଅବସ୍ଥାରେ ଉନ୍ନତି ଆଣିବା । ଅପର ପକ୍ଷରେ, ସ୍ଥାନୀୟ ବାସିନ୍ଦା, ବିଶେଷ କରି ଅବହେଳିତ ଆଦିବାସୀ / ଦଳିତ ବର୍ଗ, ନିଜର ଭିଟାମାଟି ଓ ଜୀବିକା ହରେଇବା ଆଶଙ୍କାରେ ଏଭଳି ପ୍ରକଳ୍ପ ମାନଙ୍କୁ ବିରୋଧ କରୁଛନ୍ତି । କିନ୍ତୁ, ସରକାର ଏ ସମସ୍ୟାକୁ ଗୁରୁତ୍ୱଦେଇ ଆଲୋଚନା ମାଧ୍ୟମରେ ସମାଧାନର ପନ୍ଥା ବାହାର କରିବା ପରିବର୍ତ୍ତେ, ଏହାକୁ ଏକ ଆଇନ-ଶୃଙ୍ଖଳା ବିଷୟ ଭାବେ ବିଚାର କରୁଛନ୍ତି ଏବଂ ଲାଠି ଓ ବୁଲେଟ ମାଧ୍ୟମରେ ଏହାର ସମାଧାନ କରିବା ପାଇଁ ଚେଷ୍ଟା ଚଳେଇଛନ୍ତି । ଅଧିକନ୍ତୁ, ଜନ ଅସନ୍ତୋଷର ପ୍ରକୃତ କାରଣକୁ ଏଡେଇଯାଇ ଏହା ପଛରେ 'ନକ୍‌ସାଲ, ଚରମପନ୍ଥୀ, ବାହାର ଲୋକ' ଇତ୍ୟାଦିଙ୍କ ହାତ ଥିବା କହି ପୁଲିସ ଦମନକୁ ଉଚିତ୍ ସାବ୍ୟସ୍ତ କରିବା ପାଇଁ ଚେଷ୍ଟା କରୁଛନ୍ତି ।

ଏଭଳି ପରିସ୍ଥିତିରେ, ପି.ୟୁ.ସି.ଏଲ୍. ଓଡିଶା ସରକାରଙ୍କ ପାଖରେ ଦାବୀ କରେ କି ଯେ ପର୍ଯ୍ୟନ୍ତ ଶିଳ୍ପାୟନ ଏବଂ ବିସ୍ଥାପିତ ସଂପର୍କିତ ପ୍ରଶ୍ନ ଗୁଡିକର ଉଚିତ୍ ସମାଧାନ ନ ହୋଇଛି ସେ ପର୍ଯ୍ୟନ୍ତ ରାଜ୍ୟରେ ସମସ୍ତ ଶିଳ୍ପ ପ୍ରତିଷ୍ଠା କାର୍ଯ୍ୟକ୍ରମକୁ ସ୍ଥଗିତ ରଖାଯାଉ ଏବଂ 'ବିକାଶ' ପ୍ରଶ୍ନ ପରେ ବ୍ୟାପକ ବିତର୍କ ପାଇଁ ଉପଯୁକ୍ତ ବାତାବରଣ ସୃଷ୍ଟି କରଯାଉ ।

ପି.ୟୁ.ସି.ଏଲ୍ ସମସ୍ତ ନାଗରିକ ଓ ଗଣତାନ୍ତ୍ରିକ ସଂଗଠନ ଏବଂ ସଚେତନ ନାଗରିକ ମାନଙ୍କୁ ଆବେଦନ କରୁଛି ଯେ ସେମାନେ ଏ ପ୍ରଶ୍ନ ଉପରେ ଆଲୋଚନା ଓ ବିତର୍କ ପାଇଁ ସରକାରଙ୍କ ଉପରେ ଚାପ ପକାନ୍ତୁ, ଯେପରିକି ବିକାଶ ନାଁରେ କଳିଙ୍ଗନଗର ଘଟଣାର ପୁନରାବୃତ୍ତି ନହୁଏ ।

## ଓଡିଶାରେ ବିସ୍ଥାପନ (୧୯୫୧ ରୁ ୧୯୯୫)

| ପ୍ରକଳ୍ପ | ବିସ୍ଥାପିତଙ୍କ ସଂଖ୍ୟା | ଥଇଥାନ ହୋଇଥିବା | ଶତକଡା ହାର | ଥଇଥାନ ହୋଇ ନଥିବା ଲୋକଙ୍କ ସଂଖ୍ୟା | ଶତକଡା ହାର |
|---|---|---|---|---|---|
| ଜଳସେଚନ | ୩,୨୫,୦୦୦ | ୯୦୦୦୦ | ୨୭.୯ | ୨,୩୫,୦୦୦ | ୭୨.୩୧ |
| କାରଖାନା | ୭୧,୭୯୪ | ୨୭,୩୦୦ | ୩୮.୦୩ | ୪୪,୪୯୪ | ୬୧.୯୭ |
| ଖଣି | ୧,୦୦,୦୦୦ | ୬୦,୦୦୦ | ୬୦.୦୦ | ୪୦,୦୦୦ | ୪୦.୦୦ |
| ଅନ୍ୟାନ୍ୟ | ୫୦,୦୦୦ | ୧୫,୫୪୦ | ୩୧.୦୮ | ୩୪,୪୬୦ | ୬୮.୯୨ |
| ସର୍ବମୋଟ | ୫,୪୬,୭୯୪ | ୧,୯୨,୮୪୦ | ୩୫.୨୭ | ୩,୫୩,୯୫୪ | ୬୪.୭୩ |

*ଉତ୍ସ : ଓଡିଶାରେ ବିକାଶ ଜନିତ ବିସ୍ଥାପନ ଓ ଥଇଥାନ ୧୯୫୧ରୁ ୧୯୯୫, ୱାଲଟର ଫର୍ଣାଡିଜ୍ ଓ ମହମ୍ମଦ ଆସିଫ୍ ।*

## ପୋଲିସ ଗୁଳିରେ ମୃତ୍ୟୁ ବରଣ କରିବା ବ୍ୟକ୍ତିଙ୍କ ନାମ

| କ୍ର.ନଂ | ନାମ | ଗ୍ରାମ | ବୟସ | ପୁ / ସ୍ତ୍ରୀ |
|---|---|---|---|---|
| ୧. | ଲାଣ୍ଡୁ ଜାରିକା | ବାମିଆଗୋଠ | ୨୯ | ପୁ |
| ୨. | ରାମଚନ୍ଦ୍ର ଜାମୁଡା | ବାମିଆ ଗୋଠ | ୩୫ | ପୁ |
| ୩. | ଜୁଙ୍ଗା ଜାରିକା | ବାମିଆ ଗୋଠ | ୨୫ | ପୁ |
| ୪ | ଗୋବିନ୍ଦ ଲାପୁରୀ | ବାମିଆ ଗୋଠ | ୧୪ | ପୁ |
| ୫. | ରାମ ଗାଗ୍ରାଇ | ଗାଡପୁର | ୩୫ | ପୁ |
| ୬. | ବନ୍ଦା ବାହ୍ରା | ଗାଡପୁର | ୩୫ | ସ୍ତ୍ରୀ |
| ୭. | ମୁକ୍ତା ବାଙ୍କିରା | ଗଣ୍ଡିଆ | ୪୦ | ପୁ |
| ୮. | ରଙ୍ଗଲାଲ ମୁଣ୍ଡେଇ | ବାଲିଗୋଠ | ୪୦ | ପୁ |
| ୯. | ଆତ୍ତି ଜାମୁଡା | ଗଣ୍ଡିଆ | ୩୨ | ପୁ |
| ୧୦ | ଦେଓଗୀ ତିରିଆ | ଚମ୍ପାକୋଇଲା | ୩୫ | ସ୍ତ୍ରୀ |
| ୧୧ | ସୁଦାମ ବାର୍ଲା | କେଲହୁଡି | ୨୫ | ପୁ |
| ୧୨. | ଭଗବାନ ସଏ | ଗୋବର ଘାଟୀ | ୨୫. | ପୁ |

***Published by :*** Secretary, People's Union for Civil Liberties (P.U.C.L) Bhubaneswar (on behalf of P.U.C.L. Bhubaneswar, Cuttack & Dhenkanal Units)

***Contact Address*** :
Pramodini Pradhan
2/C, 3rd Floor, Puspanjali Apartments
Vivekananda Marg,
Bhubaneswar-2
Tel Ph: 2430589

***National Office*** :
81, Sahayoga Apartments
Mayurvihar-1
Delhi-110091
Tel Ph: 11-22750014

***Printed at*** :
Media Syndicate
Plot No: 24, Unit-III,
Kharavela Nagar
Bhubaneswar

ସହଯୋଗ ମୂଲ୍ୟ -୫ ଟଙ୍କା